ଜଟଣୀ ସାହିତ୍ୟ ସଂସଦର ମୁଖପତ୍ର

# ଚିହ୍ନ

୧୯୯୯

ସଂପାଦକ
ଗୌରୀ ଶଙ୍କର କର

ସହଯୋଗୀ ସଂପାଦିକା
ରଜନୀ ରଣସିଂହ

ପ୍ରକାଶକ
ଜଟଣୀ ସାହିତ୍ୟ ସଂସଦ
ଜଟଣୀ, ଜି :ଖୋର୍ଦ୍ଧା - ୭୫୨୦୫୦

## ସୂଚୀ

# ଜଟଣୀ ସାହିତ୍ୟ ସଂସଦ

ଜଟଣୀ, ଖୋର୍ଦ୍ଧା - ୭୫୨ ୦୫୦

(ରେ.ନଂ.- ପି.ଆର୍.-୧୮୮୩/୧୨୪ - ୧୯୮୭-୮୮)

---

## କର୍ମକର୍ତ୍ତାବୃନ୍ଦ ଓ କାର୍ଯ୍ୟକାରୀ କମିଟି

### ୧୯୯୭

ଉପଦେଷ୍ଟା : କବିରାଜ ଗଂଗାଧର ମିଶ୍ର, ଡା. ଫକୀର ଚରଣ ମହାନ୍ତି, ଜୟକୃଷ୍ଣ ସ୍ୱାଇଁ (ନିର୍ବାହୀ ଅଧିକାରୀ, ଅଧିସୂଚୀତ କ୍ଷେତ୍ର ପରିଷଦ, ଜଟଣୀ)

ସଭାପତି : ଡଃ. ନାରାୟଣ ଶତପଥୀ  ଉପସଭାପତି : ଡଃ. ଶତ୍ରୁଘ୍ନ ପାଣ୍ଡବ

ସଂପାଦକ : ଭିକାରୀ ଧଳ  ସହସଂପାଦିକା : ଜୟଶ୍ରୀ ପଟ୍ଟନାୟକ

କୋଷାଧକ୍ଷ : ଡା. ପ୍ରଫୁଲ୍ଲ ଚନ୍ଦ୍ର ବେହେରା

କାର୍ଯ୍ୟନିର୍ବାହୀ ସଦସ୍ୟ : ପ୍ରାଧାପକ ପ୍ରଫୁଲ୍ଲ କୁମାର ପାଇକରାୟ, ତ୍ରିଲୋଚନ ମହାପାତ୍ର

### ୧୯୯୮

ଉପଦେଷ୍ଟା : ଡଃ. ନାରାୟଣ ଶତପଥୀ, ପ୍ରାଧାପକ ପ୍ରଫୁଲ୍ଲ କୁମାର ପାଇକରାୟ, ଜୟକୃଷ୍ଣ ସ୍ୱାଇଁ (ନିର୍ବାହୀ ଅଧିକାରୀ, ଅଧିସୂଚୀତ କ୍ଷେତ୍ର ପରିଷଦ, ଜଟଣୀ)

ସଭାପତି : ପ୍ରାଧାପକ ପ୍ରଫୁଲ୍ଲ କୁମାର ଜଗଦ୍ଦେବ  ଉପସଭାପତି : ଡଃ. ଶତ୍ରୁଘ୍ନ ପାଣ୍ଡବ

ସଂପାଦକ : ଭିକାରୀ ଧଳ  ସହସଂପାଦକ : ଗୌରୀ ଶଙ୍କର କର

କୋଷାଧକ୍ଷ : ଡା. ପ୍ରଫୁଲ୍ଲ ଚନ୍ଦ୍ର ବେହେରା

କାର୍ଯ୍ୟନିର୍ବାହୀ ସଦସ୍ୟ : ବିପିନ ବିହାରୀ ମହାନ୍ତି, ଡଃ. ଶଶୀ ରଥ

### ୧୯୯୯

ଉପଦେଷ୍ଟା : ଡଃ. ନାରାୟଣ ଶତପଥୀ, ପ୍ରାଧାପକ ପ୍ରଫୁଲ୍ଲ କୁମାର ପାଇକରାୟ, ତ୍ରିଲୋଚନ ମହାପାତ୍ର, ଜୟକୃଷ୍ଣ ସ୍ୱାଇଁ ( ନିର୍ବାହୀ ଅଧିକାରୀ, ଜଟଣୀ ପୌରପରିଷଦ)

ସଭାପତି : ପ୍ରାଧାପକ ପ୍ରଫୁଲ୍ଲ କୁମାର ଜଗଦ୍ଦେବ  ଉପସଭାପତି : ଡଃ. ଶତ୍ରୁଘ୍ନ ପାଣ୍ଡବ

ସଂପାଦକ : ଭିକାରୀ ଧଳ  ସହସଂପାଦିକା : ଜୟଶ୍ରୀ ପଟ୍ଟନାୟକ

କୋଷାଧକ୍ଷା : ରଜନୀ ରଣସିଂହ

କାର୍ଯ୍ୟନିର୍ବାହୀ ସଦସ୍ୟ : ଗୌରୀ ଶଙ୍କର କର, ଅଧାପିକା ମେରୀ ମହାନ୍ତି



# ସଂ ପା ଦ କୀ ୟ

ସାହିତ୍ୟ ସୃଷ୍ଟି ପ୍ରକ୍ରିୟାର କୌଣସି ନିର୍ଦ୍ଦିଷ୍ଟ ସଂଜ୍ଞା ନଥାଏ । ଏଥିପାଇଁ ଜଣାଶୁଣା ଆପ୍ତବାକ୍ୟ ନାହିଁ । ବିଧିବଦ୍ଧ ଦର୍ଶକ ଓ ଅର୍ଥଟିଏ ଏଥିରୁ ଖୋଜିପାଇବା ବି ମୁସ୍କିଲ୍ । ସଂଚିତ ଅଭିଜ୍ଞତା ଓ ଅବଚେତନ ଇଚ୍ଛାଶକ୍ତିର ମିଳିତ ଉଚ୍ଛ୍ୱସିତ ଅନ୍ତଃପ୍ରେରଣାଟିର କଳାତ୍ମକ ପରିପ୍ରକାଶ ଘଟିପାରିଲେ ହିଁ ଯଥେଷ୍ଟ । ବ୍ୟକ୍ତିର ଜୀବନାଦର୍ଶ, ସମକାଳୀନ ସମାଜ ଓ ସମୟର ସ୍ୱର, ଦେଶ ଓ ଦର୍ଶର ଭାବପ୍ରବଣ ସ୍ପର୍ଶକାତର ଘଟଣାବଳୀର ପ୍ରତିଫଳନ ଏହାକୁ ସାର୍ବଜନୀନ ଓ ସାର୍ବକାଳୀନ ସାହିତ୍ୟର ମାନ୍ୟତା ଆଣିଦିଏ । କବି ବା ଲେଖକଟିଏ ସେଇଥିପାଇଁ ଯୋଗଜନ୍ମା ବୋଲାଏ । ସେ ହିଁ କେବଳ ବିନା ଅନୁମତିରେ ସଚରାଚର ବିଚରଣ କରିପାରେ ଅନ୍ତର୍ମନରେ ।

ସଂପ୍ରତି ଯାହା ମନେ ହୁଏ ସାହିତ୍ୟିକଟିଏ ହିଁ ସାହିତ୍ୟର ଅମର୍ଯ୍ୟାଦାପାଇଁ ଅଧିକତର ଦାୟୀ । ନିରୋଳା ସାହିତ୍ୟ କରୁଥିବା ବ୍ୟକ୍ତିଙ୍କ ସଂଖ୍ୟା ଅଙ୍ଗୁଳିମେୟ ବା ନଗଣ୍ୟ । ସାହିତ୍ୟଠାରୁ ବେପାର, ସାହିତ୍ୟଠାରୁ ପଦମର୍ଯ୍ୟାଦା ସାହିତ୍ୟଠାରୁ ଲବି/ରାଜନୀତି କୁ ଅଲଗା କରି ଦେଖିବା ଅତୀବ କଷ୍ଟକର ମନେହୁଏ । ଉଚ୍ଚ ପଦପଦବୀରେ ଅଧିଷ୍ଠିତ ମହାତ୍ମାଙ୍କର ସାହିତ୍ୟିକ ଅଧିକାର, ଦକ୍ଷତା ସଂରକ୍ଷିତ । ସାମାଜିକ କ୍ଷେତ୍ରରେ ସାହିତ୍ୟିକ-ସୂଚୀଭୁକ୍ତ ହେବା ଧସ୍ତାଧସ୍ତି । କୌଣସି ପ୍ରକାରେ ଅଧ୍ୟାପକଟିଏ ହୋଇ ପାରିଲେ ତ ସାହିତ୍ୟିକ ହେବା ପାଇଁ ବାଧ । ସାହିତ୍ୟ ଜଗତରେ ପ୍ରତିଷ୍ଠିତ, ପ୍ରତିଷ୍ଠାବ୍ୟଗ୍ର ଗୋଷ୍ଠୀଙ୍କ ସ୍ୱଚ୍ଛ ଦୃଷ୍ଟି ଭଂଗୀ, ହୃଦୟଭରା ଓ ବିଶାଳତା କଥା ଭାବିଦେଖିଲେ ବିହତାଶ ହେବାକୁ ପଡ଼େ । ସାହିତ୍ୟ ସମସ୍ତଙ୍କର କିନ୍ତୁ ଏହା ସମସ୍ତଙ୍କ ଉର୍ଦ୍ଧ୍ୱରେ । ଏହାକୁ ନେଇ ଦଳାଦଳି, କୁତ୍ସା, ଅହଂଭାବ, ଅତିଚତୁରତା କଣ ଜରୁରୀ ? ଏହା କଣ ସମ୍ୟକ୍ ହିତମ୍ ସାଧୟତି ଇତି ସାହିତ୍ୟ ର ପ୍ରକୃତ ସ୍ୱରୂପ ?

ଆମ ଚତୁଃପାର୍ଶ୍ୱରେ ଅହରହ ଘଟାଟୋପ ପରିବର୍ତ୍ତନ ଘଟିବାରେ ଲାଗିଛି । ବହୁରୂପୀ ସଭ୍ୟତା, ବିଜ୍ଞାନର ନୂଆ ନୂଆ ତତ୍ତ୍ୱ, ଶିଳ୍ପ ଓ ଅର୍ଥନୀତିର ଉଦାରୀକରଣ ଇତ୍ୟାଦି ସାଧାରଣ ଜୀବନର ରୁଚି ଓ ମାନସିକତାକୁ ପ୍ରତିନିତ୍ୟ ପ୍ରଭାବିତ କରୁଛି । ଏ ସବୁ ସତ୍ତ୍ୱେ ଧୂଳି ଧୂମ ଜଂଜାଳ ଜର୍ଜରିତ ପୃଥିବୀ ଭିତରେ ଯତ୍‌କିଂଚିତ ସୂକ୍ଷ୍ମ ଆନନ୍ଦ ଓ ସୌନ୍ଦର୍ଯ୍ୟବୋଧ ଅଛି ବୋଲି ହିଁ ତ ମଣିଷ ବଂଚିଛି । ପାଖ ଲୋକଟିକୁ ସର୍ବଦା ପ୍ରତିଦ୍ୱନ୍ଦ୍ୱୀ ରୂପେ ବିବେଚନା କରିବା ଆମ ପାଇଁ ଆଶ୍ୱସ୍ତିକର ନୁହେଁ କି ? ଅଧାପଢ଼ା ବହିଟିଏ ବା ଅଧାଗଢ଼ା ଦିଅଁଟିଏ ପରି ମଣିଷ ଜୀବନ । ଏହାର ମୂଲ୍ୟବୋଧ ଓ ବିଶ୍ୱସନୀୟତା ସର୍ବଦା ସତେଜ ଓ ସ୍ୱତନ୍ତ୍ର ।

ଜଟଣୀର ବର୍ତ୍ତମାନିକ ଜଳବାୟୁ ମୁଖ୍ୟତଃ ବଣିକ ସଂସ୍କୃତିର ବାହକ ହେଲେ ହେଁ ଏହାର ଇତିହାସ ସମୃଦ୍ଧ ଓ ଗାରିମାମୟ । ଅନେକ ଲବ୍ଧପ୍ରତିଷ୍ଠ ସ୍ୱନାମଧନ୍ୟ ବରେଣ୍ୟ କବିକଥାକାର ଲେଖକ ନାଟ୍ୟକାରଙ୍କୁ ଏ ମାଟି ଜନ୍ମ ଦେଇଛି । ଜଟଣୀ ସାହିତ୍ୟ ସଂସଦ ଅନ୍ୟୁନ ଚବିଶ ବର୍ଷର ରେଜିଷ୍ଟ୍ରିଭୁକ୍ତ ସାହିତ୍ୟାନୁଷ୍ଠାନଟିଏ । ସାଙ୍ଗଠନିକ ଦୁର୍ବଳତା ହେତୁ ଏହାର ବିକାଶ ବିଳମ୍ବିତ । ସବୁ ସଦସ୍ୟ ଯେଝା ମତେ ସ୍ୱୟଂ ଚାଳିତ । ତଥାପି ଦୁଃଖିତି ଭିତରେ ସର୍ଜନା, ପ୍ରଭେଦ ଭିତରେ ଏକାତ୍ମଭାବ ଏହାର ବିଶେଷଣ । 'ଚିହ୍ନ' ଏହାର ସାରସ୍ୱତ ପ୍ରତୀକ ।

୧୯୯୯ ବିଦାୟ ନେଇଛି । କାର୍‌ଗିଲ୍ ଯୁଦ୍ଧ ତଥା ମହାଚକ୍ରବାତରେ ପରଲୋକଗତ ଆତ୍ମାଙ୍କ ସଦ୍‌ଗତି ହେଉ, ଏହି ପ୍ରାର୍ଥନା । ନୂଆ ବର୍ଷ, ନୂଆ ଶତାବ୍ଦୀ, ନୂଆ ସହସ୍ରାବ୍ଦ ୨୦୦୦ ର ପ୍ରଥମ ସୂର୍ଯ୍ୟ ସମସ୍ତଙ୍କ ଜୀବନରେ ସୁଖ ଓ ସମୃଦ୍ଧିର କିରଣ ବୁଣିଦେଉ, ଏଇ କାମନା । ✸

ଗୌରୀ ଶଙ୍କର କର

ସଂପାଦକ

# ଆଲୋଚନା

ପ୍ରଫୁଲ୍ଲ କୁମାର ଜଗଦେବ

## ସ୍ୱାଧୀନତୋତ୍ତର ଓଡ଼ିଆ କବିତା : ଭଲ ଓ ଭେଲ

ଯେତେବେଳେ ମୁଁ ସ୍ୱାଧୀନତୋତ୍ତର ଓଡ଼ିଆ କବିତା ସମ୍ପର୍କରେ କିଛି ଚିନ୍ତା କରିବାକୁ ବସିଛି, ତତ୍‌କ୍ଷଣାତ୍ ମୋର ସ୍ମରଣ ହୋଇଛି ସୁବିଖ୍ୟାତ ଇଂଲିସ୍ ସମାଲୋଚକ ଡେଭିଡ୍ ଡାଇଚେସ୍‌ଙ୍କର Poetry and the Modern World ପୁସ୍ତକସ୍ଥ ସେହି ନେତିବାଚକ ବକ୍ତବ୍ୟ : 'Poetry matters little to the modern world' (ଆଧୁନିକ ଜଗତ ପାଇଁ କବିତାର କିଛି ମୂଲ୍ୟ ନାହିଁ ) । କିନ୍ତୁ ମୁଁ କେତେବେଳେହେଁ ଡାଇଚେସ୍‌ଙ୍କ ସହ ଏକମତ ହୋଇପାରିନାହିଁ, କି ବର୍ତ୍ତମାନ ମଧ୍ୟ ହୋଇପାରୁନାହିଁ । ଓଡ଼ିଶା ଭଳି ପ୍ରଦେଶରେ ଯେଉଁଠି ସାକ୍ଷରତା-ପ୍ରତିଶତ ହାର ଭାରତର ଅନ୍ୟାନ୍ୟ ପ୍ରଦେଶ ତୁଳନାରେ ବହୁତ କମ୍, ସେଠାରେ ମଧ୍ୟ ମୋ ଜାଣିବାରେ ପ୍ରାୟ ତିନିଶ' ରୁ ଉର୍ଦ୍ଧ୍ୱ ସାନ-ବଡ଼, ପୁରସ୍କୃତ-ଅପୁରସ୍କୃତ-ଅର୍ଦ୍ଧପୁରସ୍କୃତ କବି ଅଧୁନା କବିତା ଲେଖୁଛନ୍ତି । ଏବଂ ପାଞ୍ଚ ଛ'ବର୍ଷରେ ହେଉପଛେ, କବିତା ବହିଟିଏର ପାଞ୍ଚଶ ବା ହଜାରେକିଆ ସଂସ୍କରଣଟିଏ ସରିଯାଉଛି । ଆଉରି ବି; କବିତା ପାଠୋତ୍ସବଟିଏ, କଲେଜଟିଏ ଥିବା ମଫସଲିଆ ସହରଟିଏରେ ଅନୁଷ୍ଠିତ ହେଲେ ବି, ଅନ୍ତତଃପକ୍ଷେ କୋଡିଏ -ତିରିଶ ଜଣ କବି ନିଜ ନିଜର କବିତାପାଠ କରୁଛନ୍ତି । ଯଦି ବିଶେଷ କିଛି ସରକାରୀ ବା ବେସରକାରୀ ପ୍ରୋତ୍ସାହନ ନଥାଇ ଓଡ଼ିଶାରେ କବିତାପାଇଁ ଆଦର ଏହିପରି, ତେବେ କିପରି କହିବା ଯେ ଆଧୁନିକ ଜଗତପାଇଁ କବିତାର କିଛି ମୂଲ୍ୟ ନାହିଁ ?

ତେଣୁ ଆଜି ଗଣମାଧ୍ୟମଗୁଡିକର ସମସ୍ତ ଆପାତ-ଆକର୍ଷଣୀୟତା ସତ୍ତ୍ୱେ ଡ୍ରଇଁ ରୁମ୍‌ରେ ଟି.ଭି ପର୍ଦ୍ଦାରେ ବିଭିନ୍ନ ଚ୍ୟାନେଲ୍‌ର ଯାତ୍ରା-ନାଟକ ବା ନାଚ-ଗୀତର ଚବିଶ ଘଣ୍ଟିଆ କାର୍ଯ୍ୟକ୍ରମ ସତ୍ତ୍ୱେ, କିଛି ଲୋକ କବିତା ନିଶ୍ଚୟ ଲେଖିବେ ଓ ଆଉ କିଛି ଲୋକେ ନିଶ୍ଚୟ ତାକୁ ପଢ଼ି ଦୋଷ ବାଛିବେ ବା ଉପଭୋଗ ଓ ସମାଲୋଚନା କରିବେ । କାରଣ, ସବୁ ସମାଜରେ କେତେକଙ୍କ ପାଇଁ ବଂଚିବା ଭଳି କବିତା ଲେଖିବା ଏକ ସ୍ୱାଭାବିକ କର୍ମ, ଏବଂ କବିତା ଲେଖି ଅର୍ଥାତ୍ କାବ୍ୟ-ଚାପ ଓ ଛନ୍ଦ ଆବଦ୍ଧ ଶବ୍ଦ ଗୁଡିକର ମାଧ୍ୟମରେ ଏକ ଗଢ଼ଣ (Structure) ତିଆରି କରି ସେମାନେ ଜୀବନର ଅର୍ଥ ଅନ୍ୱେଷଣ କରିବେ । ଏଠାରେ 'ଛନ୍ଦ' କୁ ମୁଁ 'ଯତିପାତ' (Rhyme) ଅର୍ଥରେ ବ୍ୟବହାର କରୁଛି ବୋଲି କେହି ଯେପରି ଭୁଲ୍ ନ ବୁଝନ୍ତି । ଯତିପାତ ଅବଶ୍ୟ ଅନେକ ସମୟରେ କବିତାଟିଏକୁ ମନେ ରଖିବାରେ ସାହାଯ୍ୟ କରେ । କିନ୍ତୁ ଆଉ କେତେବେଳେ ଯତିପାତ ପାଇଁ ଅତ୍ୟଧିକ ଯତ୍ନ କବିକୁ ନେଇଯାଏ ତା'ର ମୂଳ ବକ୍ତବ୍ୟଠାରୁ ବହୁ ଦୂରକୁ । ଏହି ବିଡମ୍ବନା ଅନୁଭବ କରି ପ୍ରଖ୍ୟାତ ଆମେରିକୀୟ କବି ହ୍ୱିଟ୍‌ମ୍ୟାନ ପ୍ରାୟ ଦେଢ଼ ଶତାବ୍ଦୀ ଆଗରୁ ତାଙ୍କର 'Leaves of Grass' କାବ୍ୟଗ୍ରନ୍ଥରେ ମୁକ୍ତ ଛନ୍ଦର ପ୍ରବର୍ତ୍ତନ କରିଥିଲେ । ଆମ ଓଡ଼ିଶାରେ ବି ସଚି ରାଉତରାୟ ତାଙ୍କର 'କବିତା-୧୯୬୨' ପୁସ୍ତକର ପୃଷ୍ଠବନ୍ଧରେ ସ୍ଥାନିତ 'ନୂତନ କବିତାର ଭୂମିକା'

ଶୀର୍ଷକ ଆଲୋଚନାରେ 'ନୂତନ କବିତାର ଛନ୍ଦ' ନାମକ ଅଧ୍ୟାୟଟିରେ ଏହି ମୁକ୍ତ ଛନ୍ଦ ସମ୍ପର୍କରେ ବିଶଦ ଆଲୋଚନା କରିଛନ୍ତି । (କବିତା-୧୯୬୨, ଗ୍ରନ୍ଥମନ୍ଦିର, କଟକ, ଦ୍ୱିତୀୟ ମୁଦ୍ରଣ, ୧୯୭୧, ପୃ.୧୪୯-୧୭୧) ମୁକ୍ତ ଛନ୍ଦ ସମ୍ପର୍କରେ ପ୍ରଚୁର ଅଧ୍ୟୟନର ପ୍ରମାଣ ଦେଇ ରାଉତରାୟ ସେହି ପୁସ୍ତକର ପୃ.୧୫୨ର ପ୍ରଥମ ଅନୁଚ୍ଛେଦରେ ଲେଖିଛନ୍ତି : *''ଅବଶ୍ୟ ଏକଥା ସ୍ୱୀକାର୍ଯ୍ୟ ଯେ ଗୀତିମୟତା ଓ ଛନ୍ଦପଦ୍ୟର ଲାଳିତ୍ୟକୁ ଶ୍ରୁତିମଧୁର କରିଥାଏ । କିନ୍ତୁ ଭାବତାରଲ୍ୟ, ଶବ୍ଦର ମିତବ୍ୟୟୀତା ରକ୍ଷାକରିବାକୁ ଅସମର୍ଥ ହୋଇ ଅତିଶୟୋକ୍ତି ଅବାନ୍ତରତା, ଅପ୍ରାସଙ୍ଗିକ ଲଘୁନାଟକୀୟତାର ସୃଷ୍ଟି, ଏହିପରି ବହୁ ଦୋଷରେ ପଦେ ପଦେ କେନ୍ଦ୍ରଚ୍ୟୁତ ହେବାର ବିପଦ ରହିଛି । ତେଣୁ ଆଧୁନିକ ଜୀବନର ଜଟିଳତାର ପ୍ରକାଶ ଲାଗି ଯେଉଁ ଶାଣିତ ବକ୍ତବ୍ୟର ପ୍ରୟୋଜନ, ତାହାର ପ୍ରକାଶ ଲାଗି ଗୀତିଛନ୍ଦର ଲୋଭନୀୟ ପ୍ରୟୋଗକୁ ପ୍ରତ୍ୟାହାର କରିବାକୁ ପଡ଼େ । ତା'ଛଡା କବିତାରେ ସଂଗୀତର ଗୀତିମୟତାର ଆଉ କୌଣସି ଦରକାର ନାଇ । ବରଂ ଦରକାର ଅଛି ଚିତ୍ରମୟତାର- ଯାହା ବାସ୍ତବତାର ପୂର୍ଣ୍ଣ ପରିଚୟ ଦେଇପାରିବ, ଯାହା ତାକୁ ରୋମାଣ୍ଟିସିଜିମ୍‌ର ପଥରୁ ଫେରାଇ, ନୂଆ କ୍ଲାସିସିଜିମ୍ ଆଡ଼କୁ ଘେନି ଯାଇପାରିବ । ତେଣୁ କେନ୍ଦ୍ରମୁଖୀ ହେବା ହିଁ ଆଧୁନିକ କବିତା ପକ୍ଷରେ ସବୁଠାରୁ ବଡ଼କଥା, ଗୀତି ସର୍ବସ୍ୱ ବା ଧ୍ୱନିସର୍ବସ୍ୱ ହେବା ନୁହେଁ ।''*

ଏହାପରେ 'ଆଧୁନିକ ଓଡ଼ିଆ କବିତାରେ ଚିତ୍ରକଳ୍ପର କେତେକ ନମୂନା ଦେଇ' ରାଉତରାୟ ଚିତ୍ରକଳ୍ପ ସପକ୍ଷରେ ଯୁକ୍ତି ବାଢ଼ି ପୃ.୧୫୫-୧୫୬ରେ କହିଛନ୍ତି : *''ଆଗରୁ କୁହାଯାଇଚି, ରତ୍ନବତ୍ କଠିନତା (Jewel -likehardness) directness, objectivity ଏବଂ ଏକ ପରିଚ୍ଛନ୍ନ ସୋଜା ବକ୍ତବ୍ୟ ଚିତ୍ରକଳ୍ପର ସଫଳତା ପାଇଁ ଏକାନ୍ତ ଲୋଡା । ଅବ୍‌ଜେକ୍‌ଟିଭ୍ ବା ବାସ୍ତବମୁଖୀ ରୂପକଳ୍ପ ପ୍ରଥମ କଥା । ତା' ହେଲେ ହିଁ ପାଠକମନରେ ତାହା ଏକ ଦୈହିକ ଅନୁଭବ (Physical sense) ଜାଗରିତ କରିପାରିବ୍ ଏବଂ ପାଠକ ଓ ଚିତ୍ରକଳ୍ପ ମାଧ୍ୟମରେ ବ୍ୟବଧାନ ଆଉ ରହିବ ନାଇ । ପାଠକ ଏହାକୁ ନିଜର ଓ ନିଜର ଅଭିଜ୍ଞତା ବୋଲି ଜ୍ଞାନ କରିବ । ତେଣୁ ସୋଜା ସଳଖ, ଅବ୍‌ଜେକ୍‌ଟିଭ୍ ପ୍ରକାଶ ଚିତ୍ରକଳ୍ପ ପ୍ରୟୋଗର ପ୍ରଥମ ଓ ପ୍ରଧାନ ଲକ୍ଷ୍ୟ ହେବା ଆବଶ୍ୟକ । ଭାଷାର ତାରଲ୍ୟ, ସିଧାସଳଖ ନ କହି ଘୁରେଇ ଫେରେଇ ବେଶି ଗୁଡାଏ କଥାରେ ତାହା ପରୋକ୍ଷଭାବେ ପ୍ରକାଶ କରିବା ଏବଂ ଅବଜେକ୍‌ଟିଭ୍ ପ୍ରକାଶ ବଦଳରେ ସବ୍‌ଜେକ୍‌ଟିଭ୍ ପ୍ରକାଶ ଭଂଗୀ ଗ୍ରହଣ କରିବା ଦ୍ୱାରା ଚିତ୍ରକଳ୍ପର ଶକ୍ତି ଓ କାର୍ଯ୍ୟକାରିତା ବ୍ୟାହତ ହୋଇଥାଏ । ଏହା ପ୍ରତ୍ୟେକ ଲେଖକ ଲେଖିକା ସ୍ମରଣ ରଖିବା ଉଚିତ ।''*

ଏଥିକୁ ମୋର ବକ୍ତବ୍ୟ ଖୁବ୍ ସଂକ୍ଷିପ୍ତ, ଏବଂ ତା'ହେଲା କୌଣସି 'ଥିଓରୀ' କୁ ଆଶ୍ରୟ କରି କବିତା ଲେଖାଯାଏ ନାହିଁ । କବିର କୌଣସି ଅନୁଭୂତି ଯଦି ତାକୁ ଉଚ୍ଚାଟିତ କରେ, ଏବଂ ତାର ଯଦି କବିତା ଲେଖିବାର ଶକ୍ତିଥାଏ, ତା'ହେଲେ ସେ ଭଲ କବିତାଟିଏ ଲେଖିପାରିବାର ସମ୍ଭାବନା ଅଧିକ । ଏ ସମ୍ପର୍କରେ ମୁଁ ଏଠାରେ ଦୁଇଟି କବିତାର ଆଲୋଚନା କରିବି - ଗୋଟିଏ ସ୍ୱାଧୀନତା ପରେ ଲିଖିତ, ଅନ୍ୟଟି ସ୍ୱାଧୀନତା ପୂର୍ବରୁ; ଓ ଉଭୟ କବିତାରେ ଅଛନ୍ତି ମହାନଦୀ ଓ ଜ୍ୟୋତ୍ସ୍ନା । ପ୍ରଥମେ ଖୋଦ୍ ରାଉତରାୟଙ୍କ 'କବିତା ୧୯୬୨' କବିତା ପୁସ୍ତକର ଶେଷ କବିତା '*ପୂର୍ଣ୍ଣିମାରେ ମହାନଦୀ କୂଳେ*'(ପୃ.୧୪୦) କୁ ନିଆଯାଉ: *''ମହାନଦୀ ଧାର/ନଈକୂଳ ବଡଗଛର/ଫାଙ୍କା*

*ପତ୍ରମାଳ/ଅଟକାଏ/ ଜହ୍ନକୁ । ପାଖରେ ବତୀଖୁଣ୍ଟକୁ ଲାଗି ହୋଇ/ ଶୋଇ ରହିଛି ଏକ ଧଳା ଗାଈ ।/ ଜୋଛନାର ଏକର,/ ନଈବାଲୁ/ ଲମ୍ବି ଯାଇଚି ଦିଗମୁହାଁଣି ଯାଏ/ଥଳକୂଳ ନାଇଁ ।/ଭାସିଆସେ ଏକ ରାଜହଂସୀ-ନାଆ/ସାଦା ଡେଣାରେ ମାରି ଆହୁଲା ।/ମନେ ହେଲା,/ତା' ଉପରେ ବସିଛି ମୋର ମାଆ,/(ଯେ ମର ଶରୀରେ ନାଇଁ)/ଏକ ଧୋବଫାଳ୍ହା ପିନ୍ଧି ।/ ବିରାଟ ସେ ଯେପରି ଏସିଆ ।/ଧବ୍ ଧବ୍ ଶମୁକା ଓ ବାଲି..।/ଡଂଗା ଯାଏ ଚାଲି ।/ପାରହୋଇ ଏକ ପରେ ଏକ/ ଜ୍ୟୋସ୍ନାର ମାଇଲ୍ ।/ନଈପଠା ହସି ଉଠେ ଖିଲ୍ ଖିଲ୍ ॥"*

କାହା ଜିଭରେ ହାଡ଼ ଅଛି ଯେ ସେ କହିବ ସଚି ରାଉତରାୟଙ୍କର କବିତା ଲେଖିବାର ଶକ୍ତି ନାହିଁ ! ଏବଂ ମୁଁ ମଧ୍ୟ ତାହା କହୁନାହିଁ । କିନ୍ତୁ ଏକଥା ସ୍ପଷ୍ଟ ଯେ ପୂର୍ଣ୍ଣିମାରେ ମହାନଦୀ କୂଳର ଦୃଶ୍ୟ ଦ୍ୱାରା ତାଙ୍କର କାବ୍ୟ-ସତ୍ତା ଆଦୌ ଉଚ୍ଚାଟିତ ହୋଇନାହିଁ ଓ କବିତାଟି ଚିତ୍ରକଳ୍ପ ଓ ବାକ୍-ଛନ୍ଦ ସମ୍ପର୍କରେ ତାଙ୍କର ଅଧିକାଂଶ ଥିଓରୀକୁ କାର୍ଯ୍ୟକାରୀ କରୁଥିଲେ ମଧ୍ୟ ତାହା ଏକ ଭଲ କବିତାର ଉଦାହରଣ ହୋଇପାରିନାହିଁ । "ପାଖରେ ବତିଖୁଂବକୁ ଲାଗି ହୋଇ/ ଶୋଇ ରହିଛି ଏକ ଧଳାଗାଈ" ଧାଡି ଯୋଡିକ ତ ନିର୍ଘାତ୍ ଅକାବ୍ୟିକ-ସମ୍ପୂର୍ଣ୍ଣ ଭାବରେ କାବ୍ୟ-ଟାପ ଓ କାବ୍ୟ-ଉଦ୍ଦେଶ୍ୟ ବିରହିତ ।! "ଧବ୍ଧବ୍ ଶାମୁକା ଓ ବାଲି/ଡଂଗା ଯାଏ ଚାଲି" ଧାଡିଦୁଇଟିରେ ବାକ୍-ଛନ୍ଦ ତ ପୂରାପୂରି ନିଷ୍ପ୍ରାଣ ! ଦୁଇ ତିନୋଟି ଚିତ୍ରକଳ୍ପ, ଯଥା 'ଜ୍ୟୋସ୍ନାର ଏକର', 'ଜ୍ୟୋସ୍ନାର ମାଇଲ୍', 'ରାଜହଂସୀ-ନାଆ' ପାଠକ ମନରେ ଅବଶ୍ୟ ରେଖାପାତ କରେ । 'ମୋର ମାଆ' କୁ 'ବିରାଟ ସେ, ଯେପରି ଏସିଆ' ବୋଲି କହିବା ଦ୍ୱାରା କି କାବ୍ୟ-ଉଦ୍ଦେଶ୍ୟ ସାଧିତ ହେଉଛି, ତାହା କେବଳ ରାଉତରାୟ ହିଁ କହିପାରିବେ। ଦକ୍ଷିଣପୂର୍ବ ଏସିଆର ଦ୍ୱୀପପୁଂଜ ସହିତ ଓଡ଼ିଶାର ନୌବାଣିଜ୍ୟିକ ସମ୍ପର୍କ କଥା ସେ ସୂଚାଇଛନ୍ତି କି ? ଶେଷଧାଡିଟି ଅବଶ୍ୟ ଖୁବ୍ ଉପଭୋଗ୍ୟ: "ନଈପଠା ହସି ଉଠେ ଖିଲ୍ ଖିଲ୍ ।" କିନ୍ତୁ ସାମଗ୍ରିକ ଭାବରେ ବିଚାର କଲେ ଏହା ବିନାଦ୍ୱିଧାରେ କହିହେବ ଯେ, ସମସ୍ତ ଚିତ୍ରମୟତା ସତ୍ତ୍ୱେ, "ସୋଜା ସଳଖ ଅବ୍‌ଜେକ୍‌ଟିଭ୍", ବାସ୍ତବମୁଖୀ, ଚିତ୍ରକଳ୍ପର ପ୍ରୟୋଗ ସତ୍ତ୍ୱେ, ଏହି କବିତାଟି ରାଉତରାୟଙ୍କ ଅନ୍ୟତମ ଦୁର୍ବଳ ଓ ଅସଫଳ କବିତାଟିଏ ବୋଲି ପରିଚିତ ହେବାକୁ ବାଧ୍ୟ ।

ବର୍ତ୍ତମାନ ଆମେ ଅନ୍ୟ କବିତାଟି ଆଡେ ମୁହାଁଇବା ଓ ସେଇଟି ହେଉଛି ମାୟାଧର ମାନସିଂହଙ୍କର "ମହାନଦୀରେ ଜ୍ୟୋସ୍ନା-ବିହାର" । କବିତାରେ ୩୮ଟି ସ୍ତବକ (Stanza) ଓ ପ୍ରତ୍ୟେକ ସ୍ତବକରେ ଚାରୋଟି ଧାଡ଼ି, ଏବଂ ସେଥିରେ ପ୍ରଥମ ସହିତ ତୃତୀୟ, ଦ୍ୱିତୀୟ ସହିତ ଚତୁର୍ଥ ଧାଡ଼ିର ଯତିପାତ ଓ ବେଳେବେଳେ ଉପଧା-ମିଳନ ମଧ୍ୟ ରହିଛି । ୧୫୨ ଧାଡ଼ିବିଶିଷ୍ଟ ଏହି କବିତାରୁ ଆଲୋଚନାରେ ସମତା ରକ୍ଷା କରିବା ପାଇଁ ମାତ୍ର ପ୍ରଥମ କୋଡ଼ିଏ ଧାଡ଼ିକୁ ମୁଁ ଆଲୋଚନା ପାଇଁ ଗ୍ରହଣ କରିବି, ଯେହେତୁ ରାଉତରାୟଙ୍କ କବିତାଟିର ଧାଡିସଂଖ୍ୟା ହେଉଛି ତେଇଶ । ମାନସିଂହଙ୍କ କବିତାଟିର ପ୍ରଥମ କୋଡିଏ ଧାଡି ନିମ୍ନରେ ଉଦ୍ଧାର କରାଗଲା: "ଶିଳାଗୃହ ଅନ୍ଧକାରବାସୀ ମୁଁ ଜନନୀ!/ଉତ୍କଳ ! ନଥିଲି ଜାଣି, ଅଛି ଲୋ ତୋ ପୁରେ / ଏମନ୍ତ ରୂପର ଲୀଳା ! ନ ବାହୁଁ ତରଣୀ/ ଆଜି ଏ ଜ୍ୟୋସ୍ନାରେ ନୀଳ ମହାନଦୀ ପୁରେ ।(୧) /ଆହା କି ବିପୁଳ ଶୋଭା ଭାସେ ଆଖି ଆଗେ/କେମନ୍ତେ ବର୍ଣ୍ଣିବି ମୋର ମୁଗ୍ଧ ଅନୁଭବ/ଚକ୍ଷୁ ମୋର ଅନ୍ଧ ହୁଏ ଜ୍ୟୋଛନା ପରାଗେ/ ବାଣୀ ମୋର ନାହିଁ ଫୁଟେ, ମାନି ପରାଭବ ।(୨)/ଧବଳ-ଉତ୍ତରୀ ସମ ରଜନୀ ବଧୂର/ଜ୍ୟୋଛନା

ବ୍ୟାପିଛି ଦୂର ଦିଗଚକ୍ର-ଲାଗି/ତଳେ ତାର ଏ ଧରଣୀ ପ୍ରକୃତି-ମଧୁର/ହୋଇଛି ମଧୁରତର ତା ପରଶେ ଜାଗି ।(୩)/ ଆକାଶର ଖଣ୍ଡ ସମ ମହାନଦୀ-ବାରୀ/ଚନ୍ଦ୍ରିକା-ଚୁମ୍ବନ ପାଇ ଧଳ-ଚପଳ/ ତରଳ ମୁକୁର ଅବା ହେଇଛି କେ ପାରି/ ଦେଖିବେ ବଦନ ନଭ-ସୀମନ୍ତିନୀ ଦଳ । (୪)/ଦୁଇ କୂଳେ ବୃକ୍ଷେ ରେଖ ଜ୍ୟୋଛନା ଧଉତ/ପାଣ୍ଡୁର ଆଲୋକେ ଧରି ଚନ୍ଦ୍ରାଳସ ଶିରୀ/ ସ୍ୱପ୍ନପୁରୀ କରେ ସୃଷ୍ଟି; ଅଳସ ମରୁତ/ ଜ୍ୟୋଛନା-ମଦିରା-ମତ୍ତ ବହେ ଥିରି ଥିରି ।(୫)''

ଜ୍ୟୋତ୍ସ୍ନା-ସ୍ନାତ ରଜନୀରେ ସଚ୍ଚି ରାଉତରାୟ ଥିଲେ ମହାନଦୀ କୂଳରେ, ମାନସିଂହ ଅଛନ୍ତି ନଦୀ-ଗର୍ଭରେ, ଗୋଟିଏ ଡଂଗା ଭିତରେ । କିନ୍ତୁ ଦୁହିଁଙ୍କର ପ୍ରତିକ୍ରିୟାରେ କେତେ ତଫାତ୍ ! ମାନସିଂହଙ୍କ କବିତାର ଅନୁପମ କାବ୍ୟ ମହିମା-ମଣ୍ଡିତ ଅନ୍ୟ ତିନିଭାଗର ଏଠାରେ ତ ଆଲୋଚନା କରାଯାଉନାହିଁ; ତଥାପି ଏହି ପ୍ରଥମ ଭାଗର କିଛି ଉଦ୍ଧୃତାଂଶରୁ ମଧ ମହାନଦୀର ନୀଳ ଜଳ ଉପରେ ଜ୍ୟୋତ୍ସ୍ନାର ସାନିଧ ଲାଭ କରିଥିବା ମାନସିଂହଙ୍କର କାବ୍ୟ -ଅନୁଭବର ତୀକ୍ଷ୍ଣତା, ତୀବ୍ରତା ଓ ଗଭୀରତା ଲକ୍ଷ୍ୟ କରିହେବ । ଏକ ବିରୋଧାଭାସରୁ କବିତାର ଆରମ୍ଭ : ଶିଳାଗୃହର ଅନ୍ଧକାର ଭିତରେ ସବୁବେଳେ ବଂଦୀ ହୋଇରହିଥିବା ମଣିଷଟିଏ ଆଜି ପ୍ରଥମଥର ପାଇଁ ପ୍ରକୃତିର ଉନ୍ମୁକ୍ତ ପ୍ରାଙ୍ଗଣ ''ନୀଳ ମହାନଦୀ ପୁରେ'' ଜ୍ୟୋତ୍ସ୍ନାରେ''ଏମନ୍ତ ରୂପର ଲୀଳା''କୁ ପ୍ରତ୍ୟକ୍ଷ କରୁଛି ! ଚିତ୍ରକଳ୍ପ/ରୂପକଳ୍ପ ଦୃଷ୍ଟିରୁ ଦେଖିଲେ ଜ୍ୟୋତ୍ସ୍ନାପାଇଁ ମାନସିଂହ ଅଦ୍ଭୁତ କଳ୍ପନା-ପ୍ରବଣତାର ପରିଚୟ ଦେଇ ପାଞ୍ଚୋଟି ରୂପକଳ୍ପର ପ୍ରୟୋଗ କରିଛନ୍ତି : ''ଜ୍ୟୋଛନା-ପରାଗେ'', ''ଧବଳ-ଉତ୍ତରୀ ସମ ରଜନୀ-ବଧୂର/ଜ୍ୟୋଛନା ବ୍ୟାପିଛି'', ''ଚନ୍ଦ୍ରିକା ଚୁମ୍ବନ ପାଇଁ'', ଜ୍ୟୋଛନା ଧଉତ'' ଓ ''ଜ୍ୟୋଛନା ମଦିରା-ମତ୍ତ'' । ସର୍ବୋପରି, ଏ 'ବିପୁଳ ଶୋଭାକୁ'' ପ୍ରତ୍ୟକ୍ଷ କରି ଉଚ୍ଛାଟିତ ହୋଇଥିବା ମାନସିଂହଙ୍କର କବି-ଆତ୍ମାର ମୁଗ୍ଧ ଅନୁଭବ ତାଙ୍କର କାବ୍ୟ-ସ୍ୱରକୁ ଶକ୍ତିଶାଳୀ ଛନ୍ଦ ପ୍ରଦାନ କରିଛି ଯାହାର କାବ୍ୟ-ଜ୍ୱାଳା ସଚେତନ ପାଠକର ମନ-ପ୍ରାଣକୁ ସଂଚରିଯାଉଛି । ଏ ପ୍ରବନ୍ଧର ଦ୍ୱିତୀୟ ଅନୁଚ୍ଛେଦରେ ମୁଁ ଏଇ ଛନ୍ଦ କଥା ହିଁ କହିଥିଲି, ଯେଉଁ ଛନ୍ଦ ଅକ୍ଷର ଗଣି ଯତିପାତ ବା ଉପଧା ମିଳନଟିଏ ପାଇଁ ଚେଷ୍ଟା କରେ ନାହିଁ । କବି-ପ୍ରାଣର ଇଚ୍ଛା-ଆକାଂକ୍ଷା, ବିରକ୍ତି-ବ୍ୟଙ୍ଗ-ବିଦ୍ରୂପ ଇତ୍ୟାଦି ଭାବାବେଗର ତାଡ଼ନା, ଅନୁଭୂତିର ଗଭୀରତା, ଓ କବିତା ଲେଖିବାର ଶକ୍ତିର ପରିପକ୍ୱତାରୁ ମନକୁ ମନ ଯେଉଁ କାବ୍ୟ-ଚାପର ଉଦ୍ଭବ ହୁଏ, ସେଥିରୁ ହିଁ ଏ ଛନ୍ଦର ସୃଷ୍ଟି ହୁଏ । ରାଉତରାୟଙ୍କ 'କବିତା ୧୯୬୨' ପୁସ୍ତକର ଭଲ କବିତାଗୁଡିକ(ଯଥା: ''ସାମୁଦ୍ରିକ'', ''ବଂସରର ନିଛକ ଜିଲ୍ଲାରେ'', ''ଆଶ୍ୱିନ-୧୯୫୮'', ''ମତ୍ସ୍ୟଗଂଧା'',''ସମମାତ ଟ୍ରେନ୍'') ରେ ମଧ ଏହି ଛନ୍ଦ ବିଦ୍ୟମାନ।

କିନ୍ତୁ, ଚିତ୍ରକଳ୍ପଗୁଡ଼ିକର ସମସ୍ତ ରତ୍ନବଦ୍ କଠିନତା ଓ ପରିଚ୍ଛନ୍ନ ସୋଜା ବକ୍ତବ୍ୟ ସତ୍ତ୍ୱେ ରାଉତରାୟଙ୍କ ''ପୂର୍ଣ୍ଣିମାରେ ମହାନଦୀ କୂଳେ'' ଏକ ଭଲ କବିତା ଭଳି ମନେ ହେଲାନାହିଁ ଏବଂ ମାନସିଂହଙ୍କ ''ମହାନଦୀରେ ଜ୍ୟୋତ୍ସ୍ନା-ବିହାର''ର 'ରୋମାଣ୍ଟିସିଜିମ୍' ରାଉତରାୟଙ୍କ ''ପୂର୍ଣ୍ଣିମାରେ ମହାନଦୀ କୂଳେ'' ର 'କ୍ଲାସିସିଜିମ୍' ଠାରୁ ରାଉତରାୟ କ'ଣ ବୁଝନ୍ତି, ସେକଥା ତାଙ୍କ ପୁସ୍ତକରେ ସେ କେଉଁଠି ସ୍ପଷ୍ଟ କରିନାହାନ୍ତି । ✹

✹ ସଭାପତି, ଜଟଣୀ ସାହିତ୍ୟ ସଂସଦ,
ତୁଳସୀ କୁଟୀର, ରାମଚନ୍ଦ୍ରପୁର, ଜଟଣୀ - ୭୫୨୦୫୦

ବିଷ୍ଣୁପଦ ଦାଶ

# ସହସ୍ରାବ୍ଦର ସାହିତ୍ୟ

ଗୋଟିଏ ମୁହୂର୍ତ୍ତର ଆବେଦନ ଆର ମୁହୂର୍ତ୍ତକୁ ନଥାଏ । ସେଥିରେ କିଛି ମିଶି ସାରିଥାଏ, ନହେଲେ କିଛି ଅଲଗା ହୋଇଯାଇଥାଏ । ବିଚ୍ଛିନ୍ନ ବା ସଂଯୁକ୍ତ ସହିତ ଆବେଦନ ସମୟକ୍ରମେ ଅବଲୁପ୍ତ ହୁଏ ଅବା ଦୀର୍ଘସ୍ଥାୟୀ ହୁଏ । ଏଇ ଆବେଦନ ଦ୍ୱାରା ସାହିତ୍ୟ ସତ୍ତା ଏକାନ୍ତଭାବରେ ଜଡିତ । ଏହାହିଁ ତାହାର ଆତ୍ମାଧ୍ୱନି ଓ ଅବୟବ ।

ଗତ ହଜାର ହଜାର ବର୍ଷଧରି ସାହିତ୍ୟ ନିଜର ଯେଉଁ ବ୍ୟାପକ ପରିବର୍ତ୍ତିତ ରୂପକୁ ପାଠକମାନଙ୍କୁ, ଲେଖକକବି ଏବଂ ଆଲୋଚକଙ୍କୁ ପ୍ରଦର୍ଶିତ କରିଆସିଛି ତାହା ଏଇ ଆବେଦନର ପରିପ୍ରକାଶ ମାତ୍ର । ସେଥିପାଇଁ ପ୍ରତ୍ୟକ୍ଷ ଓ ଅପ୍ରତ୍ୟକ୍ଷରେ ସାହିତ୍ୟରେ ସମାଜ ସବୁବେଳେ ଥାଏ । ଏହି କାରଣରୁ ଆମେ ମନ୍ତ୍ରଠାରୁ ମହାକାବ୍ୟ, ବୈରାଗ୍ୟଠାରୁ ଶୃଙ୍ଗାର, ଅଭିଧାଠାରୁ ବ୍ୟଞ୍ଜନା ପର୍ଯ୍ୟନ୍ତ ସବୁକିଛିକୁ ସାହିତ୍ୟରେ ଦେଖିଆସିଛୁ । ଛୋଟ ନାନାବାୟା ଗୀତର ତଥ୍ୟବିହୀନ ସତ୍ୟ ଆମକୁ ଯେତିକି ସ୍ପର୍ଶ କରିଛି ଯେକୌଣସି ଗୋଇନ୍ଦା ଉପନ୍ୟାସର ସତ୍ୟ ବିହୀନ ତଥ୍ୟ ଆମକୁ ସେତିକି ଆନ୍ଦୋଳିତ କରିଛି । ହୋମରଙ୍କ ଠାରୁ ବିକ୍ରମ ସେଠ୍‌ଙ୍କ ପର୍ଯ୍ୟନ୍ତ ସମସ୍ତେ ସମାଜ ଓ ସାହିତ୍ୟର । କାରଣ ଉଭୟର ପ୍ରାଣସତ୍ତା ହେଉଛି ଆବେଦନ ।

ଏଇ ଆବେଦନ ଦେଖିଛି ବିଗତ ହଜାର ହଜାର ବର୍ଷର ସାହିତ୍ୟକୁ ଏବଂ ସାହିତ୍ୟ ଏଇ ଆବେଦନକୁ ଧରି ରଖିଛି ଏହି ବିପୁଳ ବର୍ଷରେ । ବୁଦ୍ଧିମତ୍ତା ସକାରାତ୍ମକ ଏବଂ ନକାରାତ୍ମକ ବିକାଶ ଓ ପରିବର୍ତ୍ତନ ସହିତ ସାହିତ୍ୟର ବି' ପରିବର୍ତ୍ତନ ଘଟିଛି । ଧ୍ୱନି ଓ ଲିପିଦେଇ ସାହିତ୍ୟ ଏକ ସ୍ଥାୟୀ ଓ ସ୍ୱତନ୍ତ୍ର ଚିହ୍ନିତ ବିଭାବ ଭାବରେ ନିଜକୁ ଅନ୍ୟଠାରୁ ପୃଥକ୍ କରି ଚିହ୍ନିତ କରିପାରିଛି । ଏକ ନିଶ୍ଚିହ୍ନ ସ୍ଥିତିରୁ ଆସି ନିଜକୁ ପ୍ରଭାବଶାଳୀ ବୋଲି ସାବ୍ୟସ୍ତ କରିସାରିବାପରେ ସାହିତ୍ୟ ଏବେ କ୍ରମଶଃ ଏକ ଗୌଣସତ୍ତା ଭାବରେ ତିଷ୍ଠିରହିବାକୁ ବାଧ ହୋଇଛି । ବିପୁଳ ସମୟର ବ୍ୟବଧାନ ସାହିତ୍ୟର ଏହି ଦୀର୍ଘ ପରବର୍ତ୍ତନର ବ୍ୟବଧାନକୁ ମଧ୍ୟ ସମୟ ଓ ସ୍ଥିତି ଅନୁସାରେ ବିବିଧ କରିତୋଳିଛି । ବୌଦ୍ଧିକ ପରିବର୍ତ୍ତନ ଏହି ବିବିଧାକୁ କେତେବେଳେ ପ୍ରଭାହୀନ ତ' କେତେବେଳେ ପ୍ରଭାମୟ କରିଛି । ସଂପୃକ୍ତ ପ୍ରଭାର ପ୍ରଭାବ ସାହିତ୍ୟକୁ ସାରା ପୃଥିବୀରେ ମୋଟା ମୋଟି ଭାବରେ ସମାନ ଭାବରେ ପ୍ରଭାବିତ କରିଛି । ପ୍ରଭାବରୁ ସାହିତ୍ୟର ସୃଜନଶୀଳତା ବିଗତ ସହସ୍ରାବ୍ଦିକ ମୁହୂର୍ତ୍ତମାନଙ୍କରେ କେବେ ବି ଅଟକି ଯାଇନାହିଁ । ସୃଜନଶୀଳତାର ପରିପକ୍ୱତାକୁ ନେଇ ନିମ୍ନକୋଟୀରୁ ଆରମ୍ଭକରି ଉଚ୍ଚକୋଟୀର ମହାନ୍ ସାହିତ୍ୟସ୍ରଷ୍ଟା ସାହିତ୍ୟକୁ ସମୃଦ୍ଧ କରିଛନ୍ତି । ଅସଫଳ ସ୍ରଷ୍ଟାମାନେ ନିଜର ବିଫଳତାର ଲଜ୍ଜାରେ ଲୁଚି ରହିବା ଅପେକ୍ଷା ନିଜ ବିଫଳତାକୁ ଅନ୍ୟର ସଫଳତା ପାଇଁ ମାନଦଣ୍ଡ

ଭାବରେ ବ୍ୟବହାର କରିବାକୁ ସହନଶୀଳ ସହଯୋଗୀର ହାତବଢ଼ାଇ ଦେଇଛନ୍ତି, ସାହିତ୍ୟ ସଫଳତା ପାଇଁ ରାସ୍ତା ତିଆରି କରିଛନ୍ତି । ଗୋଟିଏ ଦଶନ୍ଧିର ସାହିତ୍ୟିକଙ୍କ ଭିତରୁ ଶତାବ୍ଦୀ ଶେଷକୁ ବଛା ହୋଇ ମନେ ରହିଛନ୍ତି ଯେତିକ ସାହିତ୍ୟିକ, ଗୋଟିଏ ସହସ୍ରାବ୍ଦୀ ଶେଷକୁ ସେଥିରୁ ବାଛିହୋଇମନେ ରହିଛନ୍ତି ଆହୁରି କମ୍ ସାହିତ୍ୟିକ । କେହି ହୁଏତ ନିଜକୁ ମନେ ନରଖାଇବା ପାଇଁ ଅଜ୍ଞାତ କବି ପାଲଟି ଯାଇଛି ନିଜ ଚେଷ୍ଟାରେ ତ' ଅନ୍ୟଜଣେ ନିଜକୁ ମନେ ରଖାଇବା ପାଇଁ ତରବାରୀକୁ ରକ୍ତରଂଜିତ କରିଦେଇଛି ଅବା ସୁଜଳା ଗହଗହ ଧରିତ୍ରୀକୁ ଶ୍ମଶାନ ଭୂମି କରିଦେଇଛି । ଏହା ସତ୍ତ୍ୱେ ସାହିତ୍ୟ ଓ ସାହିତ୍ୟିକଙ୍କୁ ମନେ ରଖିବା ପାଇଁ କୌଣସି ସହସ୍ରାବ୍ଦ ଆବେଦନ ସହିତ ସାଲିସ୍ କରିନାହିଁ । ନିପଟ ଅଧ୍ୟାତ୍ମବାଦୀଠାରୁ ଘୋର୍ ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦୀ ପର୍ଯ୍ୟନ୍ତ ଏହି କାରଣରୁ କହି ଆସିଛନ୍ତି ଯେ ପ୍ରଚାରବାଦୀ ନୁହେଁ ଚିରାୟତ୍ତ ସାହିତ୍ୟ ହିଁ ବଡ଼ ।

ସାହିତ୍ୟର ଯାହା ବଡ଼- ବଡ଼ିମା ହିଁ ତାହା । ଏହି ବଡ଼ିମା ପାଇଁ ସାହିତ୍ୟ ସବୁଦିନେ ସାହିତ୍ୟ । ଗତ ସମୟମାନଙ୍କର ବିରାଟ ଇଲାକା ଭିତରେ ଇତିହାସ, ଦର୍ଶନ, ଗୋଜବିଜ୍ଞାନ, ଅର୍ଥନୀତି ଓ କୂଟନୀତିମାନେ ସାହିତ୍ୟ ସହିତ ପରିବାର ସଜାଡି ତାକୁ ହୃଷ୍ଟ ଓ ପୁଷ୍ଟ କରିଛନ୍ତି । ସମୟ ଆସୁଛି ସମସ୍ତଙ୍କୁ ଏଡାଇ ଦେଇ ଏଇ ଦାୟିତ୍ୱଟି ହାତକୁ ନେବ ବିଜ୍ଞାନ । ସାହିତ୍ୟ ସୂଚନା ବିଜ୍ଞାନର ତୀବ୍ର ବେଗ ଆଗରେ ଆଗପରି ମନ୍ଥରଗତିରେ ଚାଲିପାରିବ ନାହିଁ । ଆଗପରି ନିଜର ପୁରୁଣା କଳେବରକୁ ନିଟୋଳ କରି ରଖିବାକୁ ବି' ସକ୍ଷମ ହେବନାହିଁ । ଆସନ୍ତା ସମୟରେ ବିଜ୍ଞାନ ବୁଦ୍ଧି, ବିକାଶ ଓ ବିନାଶକୁ ଖୁବ୍ ତୀବ୍ରତର କରିବ ଏବଂ ସାହିତ୍ୟ ତାହା ସହିତ ତାଳ ଦେଇ ଦୌଡିବାକୁ ବାଧହେବ । ନଚେତ୍ ସେ ପଛୁଆ ହୋଇଯିବା ଭୟରେ ବିଜ୍ଞାନ ତାକୁ ବି' ଏହି ତୀବ୍ରତା ଭିତରକୁ ଟାଣିନେଇଯିବ । ବିଜ୍ଞାନ ବିକାଶର ତୀବ୍ରତା ଆଗରେ ବିରାଟ ପୃଥିବୀର ସାରାଦୁନିଆ ଛୋଟ ପରିବାରର ସହଜ ସଂପର୍କ ପରି ଖୁବ୍ ନିବିଡ଼ ହୋଇଯିବ ଓ ତାହାରି ତୋଡ ବିନାଶ ଭୟକୁ ହଟାଇଦେବ । ସାହିତ୍ୟର ଯାହା ଦରକାର-ଆଙ୍ଗିକ ଓ ଆତ୍ମିକ ଦୃଷ୍ଟିରୁ, ସବୁକିଛି ଏହି ନିବିଡ଼ତା ଫଳରେ ନୂଆ ଗଠନମୂଳକ ରୂପନେବ । ନୂଆ ବିଚାରଧାରା, ନୂଆପ୍ରକାର ସହଜ ସରଳ ପ୍ରକାଶଭଙ୍ଗୀ ସାହିତ୍ୟକୁ ବହୁଗୁଣିତ କରିଦେବ । ବିଜ୍ଞାନର ହିସାବରେ ମନେହେବ ଯେମିତି ଗୋଟାଏ ନୂଆ ସାହିତ୍ୟର ଟେକ୍ନୋଲୋଜି ।

ନୂଆ ସାହିତ୍ୟର ଯେଉଁ ଟେକ୍ନୋଲୋଜି ପାଇଁ ସମୟ ଆସୁଛି, ସେତକ ଅନ୍ତତଃ ଦୁଇହଜାର ମସିହାର ପ୍ରଥମ ଶତାବ୍ଦୀରେ ସମ୍ଭବ ନୁହେଁ । କାରଣ ସୂଚନା ବିଜ୍ଞାନର ଖଗୋଳିକରଣ ଏବଂ ସାର୍ବଜନୀକରଣ ଏହି ଶତାବ୍ଦୀ ପୁରାପୁରି ଦେଖିବାକୁ ସମର୍ଥ ହେବନାହିଁ । ଏହି ଶତାବ୍ଦୀ ଦେଖିବ ସବୁକିଛିର ଆଣ୍ଟିଥେସିସ୍କୁ । ଜାତି, ଦେଶ,ଭାଷା, ବୁଦ୍ଧି, ଅର୍ଥ-ସବୁକିଛିର ସତେ ଯେମିତି ଆଣ୍ଟିଥେସିସ୍ ପିରିଅର୍ଡ ଆରମ୍ଭ ହୋଇସାରିଛି ।

ତିନୋଟିରୁ ଉର୍ଦ୍ଧ୍ୱଜାଗାରେ ଦେଶ ଦେଶଭିତରେ ସୀମାରେଖାର ଅନ୍ତ ହୋଇସାରିଥିବାବେଳେ ଅନ୍ୟତ୍ର ଗଢ଼ିହୋଇଯାଇଛି ସୁଦୀର୍ଘ ନୂଆ ସୀମାରେଖାସବୁ । ନୂଆ ବିଶ୍ୱ ଶୃଙ୍ଖଳା ତିଆରି ପାଇଁ ଯୁଦ୍ଧର ଘନଘଟା ଓ ଘରୋଇ ପୁଂଜିର ବିକାଶ ଲାଗି ସବୁଠୁ ସ୍ୱଚ୍ଛନ୍ଦରେ ଥିବା ମଣିଷ ଫନ୍ଦିଫିକର କରି ଶତାବ୍ଦୀକୁ ତିଆରି କରୁଛି । ଗରୀବ ମଣିଷ ଜାତିଆଣବାଦ ଓ ସନ୍ତ୍ରାସବାଦର ନେତୃତ୍ୱ ନିଜକୁ ମାରିବାପାଇଁ ନିଜ ହାତକୁ ନେଇଯାଉଛି । ଗତ ଶତାବ୍ଦୀର ଯନ୍ତ୍ରମଣିଷ ଏଇ ଶତାବ୍ଦୀରେ ପଶୁମଣିଷ ପାଲଟିଯାଇ ସବୁଠି ଯେମିତି ନିୟତ ନିଃଶେଷ ହେଇଯିବାକୁ ଲଢ଼ିଯିବାକୁ ତୟାର୍ । ସର୍ବତ୍ର ଯେମିତି ଉଣେଇଶି ଶହ ଚଉରାଅଶୀ ଉପନ୍ୟାସର ଛିନ୍ନପୃଷ୍ଠାସବୁ ଉଡିବୁଲୁଛି ।

ଏମିତି ଘଟଣାଭରା ସମୟର ଶତାବ୍ଦୀର ଆରମ୍ଭ ମାତ୍ର ହୋଇଛି । ତେଣୁ ସହସ୍ର ବର୍ଷ ଅନେକଦୂରରେ । ଏହି ଦୂରତା ଯେ କୌଣସି ସଂଘର୍ଷରୁ ଦୂରରେ ରହି ପାଖକୁ ଆସିବ, ତାହା ଭାବିବାର ଆବଶ୍ୟକତା ନାହିଁ । କିନ୍ତୁ, ନିଆଁ ସବୁବେଳେ ଜଳେନାହିଁ, ଏତିକି ମନେ ରଖିବାକୁ ହେବ । ନିଆଁ ଜଳିବାର ପୂର୍ବ ମୁହୂର୍ତ୍ତ ଅଛି, ପର ମୁହୂର୍ତ୍ତ ବି' ଅଛି । ସବୁକିଛିର ଥେସିସ୍, ଆଣ୍ଟିଥେସିସ୍ ଓ ସିନ୍ଥେସିସ୍ ପର୍ଯ୍ୟାୟ ଅଛି । ତେଣୁ ସାହିତ୍ୟ ପାଇଁ ସହସ୍ରବର୍ଷର ସମୟ ଏକ ଚଳନ୍ତି ସମୟ । ନିଜର ଆବେଦନ ସହିତ ଏହା ଏଇ ସମୟ ଭିତରେ ଅଧିକ ପରିପକ୍ୱ, ମାର୍ଜିତ ଓ ସୁଗଠିତ ହେବ । ଏବଂ ତାହା ହିଁ ହେବ ଅନ୍ତତଃ ଚଳନ୍ତି ସହସ୍ରବର୍ଷର ଶେଷଦିନର ସାହିତ୍ୟ ନିଷ୍କର୍ଷ । ତାହା ହିଁ ଗଢ଼ିବ ତାହାର ପରବର୍ତ୍ତୀ ସହସ୍ର ବର୍ଷ ପାଇଁ ସାହିତ୍ୟର ଭିତ୍ତିଭୂମି ଏବଂ ସେହିଦିନଟି ଡାକିଆଣିବ ଏକ ନୂଆ ସାହିତ୍ୟର ଦିନ ।✺

ଅ ବିକାଶନଗର, ଜଟଣୀ, ଖୋର୍ଦ୍ଧା - ୭୫୨ ୦୫୦

କ|ବି|ତା

ବିଭୁଦତ୍ତ ମିଶ୍ର

# ନବବର୍ଷର ଅଭିନନ୍ଦନ ନିଅ

ନବବର୍ଷର ଅଭିନନ୍ଦନ ନିଅ;
ହେ ମୋର ଦେଶର, କୋଟି କଳାକାର, ଲେଖକ ଶିଳ୍ପୀକୁଳ
ଲେଖନୀ ମୂନରେ ନୂଆ ସଙ୍କେତ ଦିଅ ।

ଅତୀତ ତ ଏଇ ମିଶିଯାଏ ଧୀରେ,
ବୁଦ୍‌ବୁଦ୍ ସମ ମହାକାଳ ନୀରେ,
ବକ୍ଷରେ ତା'ର ଭରା ଇତିହାସ, କେତେ ଜୟ, ପରାଜୟ,
କେତେ ବେଦନାର ଅଶ୍ରୁ ମୀନାର
କେତେ କାମନାର କଳ୍ପିତ ହାର,
ମଣିଷ ମନର ଆଶା, ନିରାଶାର ନିର୍ମଳ ପରିଚୟ;
ହେ ମୋର ଦେଶର, ହେ ମୋର ଜାତିର
ଶିଳ୍ପୀ ଲେଖକ କବି କଳାକାର,
ଲେଖନୀ ମୂନରେ ନୂଆ ସଙ୍କେତ ଦିଅ ।

ଗଲା ଯା' ଯାଇଛି, ତା ଲାଗି ଶୋଚନା
ଲାଭ କି'ବା ଆଜି କରିଲେ ରଚନା,
ନବୀନ ବର୍ଷେ, ପ୍ରତିଟି ଚିତ୍ତେ ଶୁଭ୍ର କମଳ ଫୁଟୁ
ଅତୀତର ଶତ ଦୈନ୍ୟ ଯାତନା
ବାତ୍ୟା, ମରୁଡି, ଧ୍ୱଂସ ଭାବନା,
ଭୁଲ; ଜାଗୁ ପ୍ରାଣେ ନବୀନ ଚେତନା,
ନବୀନ ଅବ୍ଦେ, ପ୍ରତିଟି ଶବ୍ଦେ, ନବ ସଂଗୀତ ଉଠୁ
ତୁଚ୍ଛ ଶୋଚନା ଭୟ;
ହେ ମୋର ଦେଶର, ହେ ମୋର ଜାତିର
ଶିଳ୍ପୀ, ଲେଖକ, କବି କଳାକାର,
ନବବର୍ଷର, ନବୀନାବ୍ଦର ଅଭିନନ୍ଦନ ନିଅ ।✹

(ଆଗାମୀ ନୂତନ ସହସ୍ରାବ୍ଦୀ ଉପଲକ୍ଷେ)

✹ ମୁହୂର୍ତ୍ତ, କୁଦିଆରୀ, କଟଣୀ - ୭୫୨୦୫୦

ଶତ୍ରୁଘ୍ନ ପାଣ୍ଡବ

# କେନ୍ଦରା କଥା

କପିଳବାସ୍ତୁ କି ଶ୍ରାବସ୍ତୀର
ରାସ୍ତାଘାଟରେ ଯେତେବେଳେ
ରକ୍ତ ଚିରା ଖରା -
ନିକାଂଚନ ଅଶ୍ୱତ୍ଥ ଶାଖାରେ
କାପ୍ତାର ଘୁମୁରା -
ହାଟରେ ଫେରିବାଲାର ଡକାହକା
ଓ କିଣାବିକାର ଘୋ ଘା'
ସେତିକିବେଳେ ହିଁ ବାଜେ
କେନ୍ଦରା

ସେ ସ୍ୱରରେ ଏତେ କୁହ ଓ ଦରଜ
କୋଉଠି ଥାଏ
ଯେ ଚହଲିଯାଏ ସାରା ଖରାବେଳ
ଥମ୍ ଥମ୍ ବିଷର୍ଣ୍ଣତା ଭାରି ହୁଏ

ସବୁଯାକ ଖରା ଯାଇଁ ଠୁଳ ହୁଏ
ବାଟ ଚାଲୁଥିବା ଯୋଗୀର
ଲାଉ ତୁମ୍ୱାରେ ଓ କପାଳରେ

ସେ ସ୍ୱର ବିଷୟ ବାସନାରେ
ଆଟୁପାଟୁ ସଂସାରୀର
ଖଟର ବାଡ ଧରି
ମନ୍ଦିରର ଚୂଡା ଛୁଇଁ
ଆକାଶ ଆଡକୁ ଯାଏ

ଖାସ୍ ଖରାବେଳଟାରେ
କାହିଁକି ବାଜେ ଏ କେନ୍ଦରା ?
ଘର ସଜାଡିବା
ଘିଅ ଘଡି ଭରିବା ସରି ନଥାଏ
ଘୋର କର୍ମକଷଣ
ସହୁଥାଏ ଦିହ
ହେଲେ ସେଇ ଉଦାସ ଡାକରେ
ଆନମନା ନ ହୋଇ ଚାରା କ'ଣ ?

ସେ ସ୍ୱର କେତେବେଳେ
ଛାତିର ନିଭୃତ ପିଞ୍ଜରାରେ ପଶେ
ଚେତନାର କେଉଁ ନୀଳ କନ୍ଦରରେ
ବିଶ୍ରାମେ
ତା'ରି ପିଛା ଝୁଣ୍ଟି ଧପାଳି ମୁଁ
କୁଆଡେ ଯାଏ ଯେ ହୋବ ନଥାଏ

ଏଥର
ସେଇ ସ୍ୱରର କାନି ଧରି
ମନ୍ଦିରର ଚୂଡା କି
ଆକାଶର ଶୂନ୍ୟତା ଆଡକୁ
ଲହରଟିଏ ହୋଇ ବହିଯିବାକୁ ହେବ
ଏ ଖରାର ସଡକ ଉପରେ
ଛାତି ଭିତରର ହାଡକୁ
କେନ୍ଦରା କରି ବଜାଇବାକୁ ହେବ ।

ନୀଳକଣ୍ଠେଶ୍ୱର ମନ୍ଦିରମାର୍ଗ, ଗାନ୍ଧୀନଗର, କଟଣୀ - ୭୫୨୦୫୦

ଗୌରୀଶଙ୍କର କର

# ପଡ଼ୋଶୀ

ଚାଲ ପଡ଼ୋଶୀ ହେବା ।
ଏକ ଶବ୍ଦାଙ୍କ ବିଶିଷ୍ଟ
ପରସ୍ପରର ନିକଟତମ
ଶତ୍ରୁ ବା ମିତ୍ର ପାଲଟିବା ଚାଲ ।

ମୁଁ ତମକୁ କିଛି ଆତ୍ମୀୟତାର
ଜାମୁକୋଳି ଦେବି । ତମେ
ତା ସ୍ୱାଦରେ ମୋହିତ ହେବ ।
ପରବର୍ତ୍ତୀ ପର୍ଯ୍ୟାୟରେ ତମ ସ୍ତ୍ରୀ
ଦାବୀ କରିବେ ମୋ
ନିରପରାଧ କଲିଜାଟି ।

ସକାଳୁ ଉଠିଲେ ମୁହାମୁହିଁ
ଅବସ୍ଥାରେ ତମେ କିଛି
ବଳତ୍କାର ହସିବ । ମୁଁ
କିଛି ଇଚ୍ଛା କରି କାଂଦିବି ।
କୃତ୍ରିମତାର କଟା ନାକ
ଦାଂଡରେ ପଡି ଗଡୁଥିବ ହାଟରେ ।

ବସ୍ତୁତଃ କଲିଜାଗୁଡ଼ିକ
ଆମ କାହାରି ଦାୟିତ୍ୱରେ
ଥାଏ କି ? ଶୀତଳ
ହୁଙ୍କାରର ଖରା କାକରରେ
କମ୍ପୁଥାଏ ଫୁଙ୍ଗୁଳା ଜୀବନ ।

ଚାଲ ଭିଡାଭିଡି ହୋଇ
ଗୋଟିଏ ଡଂଗାରେ ବସିବା ।
ତଡାତଡି ହୋଇ ଗୋଟିଏ
ବୃକ୍ଷରେ ଉଠିବା । ସମୟ
ସୁବିଧା ଦେଖି ପେଲି ଦେଉଥିବା
ପରସ୍ପର ତଳକୁ ।
ବାଘ ମୁହଁକୁ ନଇଲେ ଗଂଡ ଜଳକୁ

ନିଜ ଭିତରକୁ ଝୁଙ୍କି
ଚାହିଁବା ନାଇଁ କେବେ ।
ନିଜ ଉଚ୍ଚତା ତଉଲିବାକୁ
ବେଳ କାଇଁ ? ଦୂଷିତ
ଇଲାକାରେ ସଡୁଥିବା ବଂଟିବାର
ଚଉହଦୀ ଭିତରେ ପର୍ସପର
ପିଠିକୁ ସାଉଁଳିବା ଛିଦ୍ରଟିର
ଅନ୍ୱେଷଣ ପାଇଁ ।

ଚାଲ ପଡୋଶୀ ହେବା ଚାଲ ।☀

☏ ନୂଆ ବସ୍‌ଷ୍ଟାଣ୍ଡ, ଜଟଣୀ - ୭୫୨ ୦୫୦

ଭିକାରୀ ଧଳ

# ସମୟର ଅବଶିଷ୍ଟ ରଂଗ

ସେଇ ବର୍ଷା ଭିଜା ରାତିରେ
ସେମାନେ ଥିଲେ କେତେଜଣ
ଚିହ୍ନା ଚିହ୍ନା ଲାଗୁଥିଲା ପାଦଶବ୍ଦ
ସ୍ୱର ଥିଲା ପ୍ରଖର
ସବୁ କିଛି ନେଇଯିବା ପାଇଁ
ଶୁଭୁଥିଲା ନମ୍ର ଉଚ୍ଚାରଣ ।

ଆତଙ୍କର ବିଦ୍ୟୁତ ଛୁଆଁରେ
ଅଧିର ହେଲା ଘର
ମା, ପିଲା
କିଏ ଲୁଚିବାରେ ତ'
କିଏ ଲୁଚେଇବାର ଉପକ୍ରମରେ
ମୁଁ ଥିଲି ନିର୍ବାଣପ୍ରାପ୍ତ ଜୀବନଟିଏ ପରି
ନିର୍ବିକାର
ଭୟ କି, ଆଶଙ୍କା କିଛି ଛୁଇଁପାରୁନଥିଲା
ଯେମିତି ସରି ଆସିଛି ଦିନ ।

ଖାଲିଘର, ଖାଲି ଦେହ, ଖାଲି ପେଟ
ଖାଲି ହାତ, ଖୋଲା ମୁହଁ
ଖାଲି ଖାଲିରେ
ନୀରବି ଗଲା ସଭିଙ୍କର କୋହ ।

କହିଲି ସବୁଦେଇ ସାରିଛି
ଏଇ ହାତରେ
ରାତିରେ ନୁହେଁ ଦିନରେ
ଅଚିହ୍ନା କାହାକୁ ନୁହେଁ
ବିଶ୍ୱାସର ରଂଗମଖା
ଅବିଶ୍ୱାସୀ ମଣିଷ ହାତରେ ।
ଦେଖିବାକୁ ଅଛି ଯାହା ଖାଲି ଖାଲି
ଶୂନ୍‌ଶାନ୍ ଘର ଓ ବାହାର
ଅବଶିଷ୍ଟ ଅଛି ଯାହା ସଂପତ୍ତି ଭିତରେ ।

ସେମାନେ ଆଚମ୍ବିତ ହେଲେ !

କହିଲି ନେବ ତ, ନିଅ
ଗୋଟିଏ ବେକାରୀର ବଳୟ ଭିତରେ
ତିନୋଟି ଡ଼ାଉରୀର ଅନ୍ଧାରୀ ଗୁମ୍ଫାରେ
ମୋର ସଂପତ୍ତି
ଯାହା ଏବେ ମହଜୁଦ ଅଛି
ମୋ ପାଖରେ ।❋

❋ସଂପାଦକ, ଜଟଣୀ ସାହିତ୍ୟ ସଂସଦ, ନିଜିଗଡ଼ କୁରୁଖୀ, ହରିରାଜପୁର, ଜଟଣୀ

ପଦ୍ମଲୋଚନ ସାହୁ

# ଚିହ୍ନ

ଜହ୍ନ ବୁଡିଲେ ଅଂଧାର
ମନ ପୋଡିଲେ ଅଂଗାର ।
ଜହ୍ନ ପାଇଁ ପ୍ରିୟା ମୋର ଅଳିକରେ
ଖେଳିବାକୁ ଚଂଦ୍ରମାର କଦଂବ ବନରେ ।

ଦୂର ପର୍ବତ ସୁଂଦର
ଦୂର ବଂଧୁତା ମଧୁର
ଦୂର ସମୁଦ୍ରର ନୀଳ ଢେଉ ଲହଡି ଭାଂଗେ
ମୋ ପ୍ରିୟାର ନୀଳ କବରୀରେ ।

ସୂର୍ଯ୍ୟ ଅସ୍ତ ହେଲେ ଯାଏ ଦିନ
ମନ ମରିଗଲେ ରହେ ଚିହ୍ନ
ଅତୀତ ବିସ୍ମରି ହୁଏନା ସ୍ମୃତିର ଢେଉରେ
ବାଟୋଇର ନିଦଭାଂଗେ ସକାଳର କଅଁଳ ସ୍ପର୍ଶରେ ।

ଲାଲ ଲାଲ ରଂଗ ସବୁ ରକ୍ତ ନୁହେଁ
ତୋ ଅଧର ରଂଗ ପରି ସୂର୍ଯ୍ୟ କଣ ଲାଲ ଦିଶେ...?
ନବ ବଧୂର ଲଲାଟରେ ଝଲକୁଥିବା ସିଂଦୂର ଟୋପାରେ...?

ବଂଚିବା ଠାରୁ ମରଣ ଭୟଂକର
ଅମୃତ ଠାରୁ ଗରଳ ଭୟଂକର
ମନ ଚହଲିଗଲେ ଚହଲା ପାଣିରେ
ଚିହ୍ନ ଲିଭେ ନାହିଁ କବିର ତୂଳୀରେ
ଅମର ସେ ଯୁଗ- ଯୁଗାଂତରେ ।❋

ଈ ବିଶ୍ୱନାଥ କଲୋନୀ, ଜଟଣୀ - ୭୫୨୦୫୦

ବିପିନ୍ ବେହେରା

# ଏଇ ମୋ ପ୍ରିୟ ଓଡ଼ିଶା

ଏଇ ମୋ' ପ୍ରିୟ ଓଡ଼ିଶା
ଏଠି ମଣିଷ ବୁଝେନି
ମଣିଷ ମନର ଭାଷା
ମଣିଷ ଭାଂଗୁଚି ମଣିଷର ପ୍ରିୟ ବସା।

ମଣିଷ ଛାତିରେ ମଣିଷ ଭୁଷୁଚି
ଛୁରୀ ଠେଣ୍ଟା ଭାଲି ଭୁଷା
ମଣିଷ ହାଡ଼ରେ ମଣିଷ ଖେଳୁଚି ପଶା
ମଣିଷ ରକ୍ତରେ ବସା ବାନ୍ଧିଛନ୍ତି
ଘୃଣା ଅଂହକାର ହିଂସା ।

ବଡ଼ି ମରୁଡ଼ିରେ ଗହୀର କାନ୍ଦୁଚି
ବିଦେଶେ ଷଦୁଚି ଚାଷୀ
ଭାଷଣରେ ଖାଲି
ବରଷି ଯାଉଚି ପୀରତିର ମିଠା ଲସି !

ଭଗତ ଟୁଂଗୀରେ ଭୋଅଟ ଚର୍ଚ୍ଚା
ପୂଜା ହୁଏ ଛୁରୀ କାତି
ମଦ ମାଂସର ବନ୍ୟାଝୋଳରେ
ଭାସେ ତାଳପତ୍ର ପୋଥି ।

ମଣିଷ ହାଡ଼ରେ ତିଆରି ଚାଲିଛି
ମାଳ ମାଳ ଅଟ୍ଟାଳିକା
ଭଂଗା ଝୋପୁଡ଼ିରେ ମଣିଷ କାନ୍ଦୁଚି
ସପନ ହଉଛି ଫିକା ।

ସତେଇଶି ବର୍ଷ ଶିକ୍ଷିତ ଯୁବକ
ସତୁରୀ ବରଷ ବୁଢ଼ା
ଯଉତୁକ ପାଇଁ ଶାଶୁଘରେ ଝିଅ
ପାଲଟେ ମଶାଣୀ ମଡ଼ା ।

ଚୋର ଚୋର ବୋଲି ଚିଲେଇଲେ ଏଠି
ଆଇନିକୁ ଲାଗେ ଏକ
ମଳି ମୁଣ୍ଡିଆର ମେରୁ ହାଡ କାଟେ
ଫାଇଲି ତଳିଆ ପୋକ ।

ମାଆ ମାଆ ବୋଲି ଡାକ ପକେଇଲେ
ମମି ମାରୁଥାନ୍ତି ମୁଥ
ବାପା ବାପା ବୋଲି ଡାକ ପକେଇଲେ
ଡାଡ଼ି ମାରୁଥାନ୍ତି ନାତ
ମାତୃଭୂମି ମାତୃଭାଷାରେ ମମତା
ମୁହିଁରେ ଓଡ଼ିଆ ସୁତ । ✵

✵ଗ୍ରାମ/ପୋ : କଣ୍ଟି, ପିପିଲି, ପୁରୀ

ରଜନୀ ରଣସିଂହ

# ତୁମେ

ତୁମକୁ ପାଇବା ପାଇଁ
କେତେ ବର୍ଷ କେତେ ମାସ
ତପସ୍ୟା କରିବା ପରେ
ତୁମେ ମୋ ଆଡକୁ ବଢ଼ାଇଲ
ଆପଣାର ହାତଟିଏ
ଯେଉଁ ହାତ ଆପଣେଇଲା ମୋର
ସମସ୍ତ ସତ୍ତାକୁ ନିର୍ବିକାର ଭାବେ ।

ସେଇ ହାତ
ହତାଶାର ନିଥର ମନରେ ମୋର
ଭରିଦେଲା କେତେ ନୂଆ ଆଶା
ନୀରବ ମନରେ ମୋର ଭରିଦେଲା
ଅସୁମାରୀ ସ୍ୱପ୍ନ
ଭାଷା ଯେତେ ଲେଖି ଦେଇ ମୋ ମୁହଁରେ
ଆପଣାର କରି ମୋତେ ନେଇଗଲା
ଅନେକ ଦୂରକୁ ।

ସେଇ ହାତ ମିଶାଇଲା ମୋତେ
କ୍ଷୀର ସହ ନୀର ମିଶାଇଲା ପରି
ତୁମ ସହ
ମୁଁ ସେଇଠି ସମର୍ପି ଦେଲି ତୁମକୁ
ଜୀବନରେ ଯାହାଥିଲା
ସାଇତା ସଂପତ୍ତି ମୋର ।

ସେଇଦିନୁ ତୁମେ ମୋର
ଏକାନ୍ତ ନିଜର ହେଲ
ତପସ୍ୟାର ଫଳ ବୋଲି
ମନ ଇଚ୍ଛା ନେଇ ଚାଲିଲ ମୋର
ଆରମ୍ଭରୁ ଶେଷ
ଅବଶିଷ୍ଟ ଆୟୁଷ
ମୁଁ ନିଃସ୍ୱ ହେବା ପୂର୍ବରୁ
ହାତରେ ଧରାଇ ଦେଲ
ଭଙ୍ଗା ବଂଶୀଟିଏ
ଏବଂ ଫେରିଗଲ ଆସିବା ସ୍ଥାନକୁ ।

ସେଇ କାଳୁ ମୁଁ ଚାହିଁଛି ତୁମ ପଥ
ବଂଶୀଟିକୁ ସାଇତିଛି
ଛାତି ତଳ ନିଭୃତ ସ୍ଥାନରେ
ଝୁରି ଝୁରି ତୁମ ପାଇଁ ତୁମକୁ ପାଇବା ପାଇଁ
ତୁମ ସହ ଯୋଡିଥିବା ସଂପର୍କ ଯେ
ବିଗତ ଅତୀତ ।

ଏବେ ମୁଁ ତୁମ ପାଇଁ ଅସଜଡା ଗୀତଟିଏ
ଅଲୋଡ଼ା ହୋଇ ପଡୁଛି ଦିନକୁ ଦିନ
ଯେତେ ଚେଷ୍ଟା କଲେ ବି ସଜାଡି ପାରୁନି
ମୋର ବର୍ତ୍ତମାନକୁ, ବଂଶୀ ଖଣ୍ଡିକୁ
ନା ଲିଭେଇ ପାରୁଛି ମନରୁ ତୁମର ସ୍ମୃତିକୁ ।

ତୁମେ ଏବେ କେଉଁଠି କିପରି ଅଛ ?
ମୁଁ ଖୋଜୁଛି ମାଟିରୁ ଆକାଶ
ଦିଗରୁ ଦିଗ୍‌ବଳୟ ବ୍ୟାପି ଅନନ୍ତ ପଥ
ଭାବକୁ ନିକଟ ବୋଲି
ହାତ ପାହାନ୍ତାରେ ନିତି ଖୋଜି ଖୋଜି
ତୁମକୁ ମୁଁ ହେଉଛି ନୟାନ୍ତ ।

ପାଖରେ ଥାଇ ପାଇବା ଦୁରୂହ ବ୍ୟପାର ବୋଲି
ଲୁହ ଆଉ କୋହର ସାଗର ତଳେ
ବଂଚିବାକୁ କରୁଛି ଅଭ୍ୟାସ ।

ହେ, ମୋର ପ୍ରିୟତମ ! ଶତାବ୍ଦୀର ବୁକୁ ଚିରି
ତୁମେ ଆଉ ଥରେ ଆସ
ଛୁଇଁ ଦିଅ ମୋର ଦେହ
ଜୀବନ ଯନ୍ତ୍ରଣା ଯେତେ ଭୁଲିଯିବି ତୁମରି ସ୍ପର୍ଶରେ
ଯୁଗ ଯୁଗ ପ୍ରତୀକ୍ଷା ଯେ ହୋଇଯିବ ଶେଷ ।✺

✠ପ୍ରଧାନ ସାହି, ପାଞ୍ଚଗାଁ, ଜଟଣୀ - ୭୫୨୦୫୦

ପ୍ରଫୁଲ୍ଲ ଚନ୍ଦ୍ର ବେହେରା

# ମନେ ପଡ଼ ତୁମେ ସବୁଦିନ

ମନେପଡ଼ ତୁମେ ସବୁଦିନ;
ତୁମେ ସବୁଦିନ ମନେପଡ
ଚେତନ/ଅବଚେତନରେ ।

ମୋର ସବୁ ସତ୍ତା ନିଃଶେଷ
ସାଗର ମନ୍ଥନ ବି ଶେଷ
ଅମୃତ ଟୋପେ ପାଇଁ ଚାହିଁ ଚାହିଁ;
ଆଖି ପାଣି ଆଖିରେ ମଲାଣି ।

।
; କଳ୍ପନାରେ;
ତୁମ ଭିତରେ ଖୋଜେ ଲାଜ ଲାଜ ହସ
ଚୁପ୍ ଚୁପ୍ କଥା
ଓଢ଼ଣା ଭିତରୁ ମୁହଁ; ବଧୂଲି ଅଧର ।
ଅଳତା ମଖା ପାଦର ମପା ଚୁପା ଚାଲି;
ଚପଳ ଛନ୍ଦା । ବିଦୂଷୀ । ବିଦିଶା ।
ସ୍ୱପ୍ନ ସ୍ୱପ୍ନରେ ରହେ । ଆଶା, ନିରାଶା ।
ଗର୍ବୋନ୍ନତ ମଥା । ଉଦ୍ଧତ ଚାହାଣୀ
ସ୍ପର୍ଦ୍ଧିତ ଚାଲି/ଆତଙ୍କିତ କରେ ମନ
ପ୍ରଗଲ୍‌ଭା/ଚଳ ଚଞ୍ଚଳ ନଈ ।
ବାକ୍ୟବାଣରେ ହୃଦ ଦହୁଥିବା ବ୍ୟାଧ
ଯଦିଓ ତମେ ନାରୀ ।
ତଥାପି ବ୍ୟାଧ ମନେପଡେ
ମୃଗୁଣୀକୁ ସମାପ୍ତ କରିଦେଲା ପରେ ବି
ଖୋଜା ହୁଏ ବ୍ୟାଧ ।
ମୃଗୁଣୀ ଲାଗି ବ୍ୟାଧ ଇ ସୁନ୍ଦର
ମୋକ୍ଷର ମାର୍ଗ ।
ଯେଣୁ, ଜନ୍ମ ଜନ୍ମାନ୍ତରରୁ
ମୃଗୁଣୀ ସହିତ ବ୍ୟାଧ ସମ୍ବନ୍ଧିତ ।✺

✠ଶ୍ୱେତବସନ୍ତ କ୍ଲିନିକ୍, କଲେଜ୍‌ରୋଡ୍, ଜଟଣୀ - ୭୫୨୦୫୦

ଆରତୀ ସେନ୍

# ହେ ଆଲୋକ !

ହେ ଆଲୋକ !
ସୃଷ୍ଟିର ଯୁଗ୍ମତତ୍ତ୍ୱ,
ଅଛ ଯୁଗ ଯୁଗ ଆମ ଧରଣୀରେ ।
ଦେଖିଛି ତୁମକୁ ଗତାୟୁ ମଣିଷ
ଚଳମାନ ଏବର ସଭ୍ୟତା ।

ହେ ଆଲୋକ !
ସୂର୍ଯ୍ୟର ପ୍ରତୀକ ତୁମେ, ତୁମେ ଜ୍ୟୋସ୍ନା ଜାଳ
ସଂସ୍କୃତିର ସମାରୋହ, ସଭ୍ୟତା, ପ୍ରଗତି,
ଜୀବନର ତତ୍ତ୍ୱ ଗୀତି-ସାମର ଝଙ୍କାର
ସୃଷ୍ଟି ମୂଳବୀଜ ।

ହେ ଆଲୋକ !
ବ୍ୟକ୍ତିତ୍ୱ ଅନ୍ୟ ଏକ ରୂପ
ଦୟା-କ୍ଷମା ଓ ତ୍ୟାଗ
ପ୍ରଜ୍ଞା-ବୁଦ୍ଧି ଓ ବିବେକ, ଶିକ୍ଷାର ସ୍ୱାକ୍ଷର
ସାରସ୍ୱତ ସାଧନାର ଜୀବନ୍ତ ଆଲେଖ୍ୟ,
କଳିର ଫୁଟନ୍ତା ରୂପ ତୁମ ଆବିର୍ଭାବ ।

ହେ ଆଲୋକ !
ତୁମେ ସତ୍ୟ-ଶାନ୍ତି କରୁଣାର ଧାରା
ଅନ୍ଧକାରୁ ଆଲୋକକୁ
ବଢ଼ିବାର ଅପୂର୍ବ ପ୍ରେରଣା ।

ଅଧ୍ୟାପିକା, ପଞ୍ଚାୟତ ମହାବିଦ୍ୟାଳୟ, ସା : ହରିପୁର,
ପୋ : ଗୋଡିପୁଟ-ମାଟିଆପଡା, କଟଣୀ

ହରିବନ୍ଧୁ ପରିଡ଼ା

# ଅସ୍ତରଂଗ

ନଭେମ୍ବର ମାସ ସତର ତାରିଖେ, ରିଲିଫ୍ ନେଇ
ସୁଯୋଗ ପାଇଲି, ଅସ୍ତରଂଗ ରୂପ ଦେଖିବା ପାଇଁ ।
ସେ ମାଟି ପରଶେ, ଅନ୍ତରରେ ମୋର ଉଠିଲା କୋହ,
ଲେଖିବାକୁ କିଛି, ଭାବି ମୁଁ କଲମେ ଭରିଲି ଲୁହ ।

କି ଥିଲା ପ୍ରକୃତି, ଆହାକି ବିକୃତି ଦେଲାରେ ଆଣି,
ଏଇକି ସେଦିନ ଅସ୍ତରଂଗ ସତେ ନ ହୁଏ ଜାଣି
କାହିଁ ସବୁଜିମା ଶସ୍ୟର ନୀଳିମା ପାଣ୍ଡୁର କରି,
ସାମୁଦ୍ରିକ ଝଡ ଛଡାଇ ନେଇଛି ତା ତନୁଶିରୀ ।

ମଣିଷ ପିଞ୍ଜରା ଥରାଇ ଦେଇଛି ତା'ର ଗର୍ଜନ,
କାହୁଁବା ପାରନ୍ତା କରି ସେ ନିଜକୁ ଆୟତ୍ତାଧିନ
ପ୍ରକୃତି ସହିତ କି ଯୁଦ୍ଧ କରିବ ମଣିଷ ଛାର,
ମାଟିରେ ମିଶିଲା କେତେ ପଶୁପକ୍ଷୀ ନର ଶରୀର ।
ଏଣେତେଣେ ପଡି ରହିଅଛି ମଢ଼, ପଡିଛି ଶବ,
ଏ ବିଭସ୍ତ ରୂପ ଦେଖିଲେ ପାଷାଣ ତରଳିଯିବ ।

ହା ଅନ୍ନ ଚିତ୍କାରେ ଟଳମଳ ହୋଇ ପଡୁଛି ଗୋଡ
ଦୋହଲି ଗଲାଣି ନର ନାରୀଙ୍କର ପିଞ୍ଜରା ହାଡ ।
ସବୁତ ଯାଇଛି ରହିଛି ପିନ୍ଧିବା ଲୁଗା କେବଳ
ମାଟି ତଳୁ କିଛି ବାହାର କରନ୍ତେ ପାଉନି ବଳ ।

ତରୁ ତଳେ ଅବା ଆଶ୍ରୟ ନେବାକୁ ଲୋଡନ୍ତି କେହି
ପ୍ରବଳ ପ୍ରହାରେ ତରୁଲତା ପଡିଅଛନ୍ତି ଶୋଇ ।
କିଏ ବା ଲୋଡୁଛି ମୁଣ୍ଡ ଗୁଂଜିବାକୁ କୁଡିଆ ଘର
କତା, ବତା, ନଡା, ହୋଇ ତ ଯାଇଛି ନୟନୁ ଦୂର ।

ଖୋଲା ଆକାଶକୁ ଚାହିଁ ରହିଛନ୍ତି କେତେ ଯେ ଜନ
ପୋକ ମାଛି ପରି ଆବର୍ଜନା ମଧ୍ୟେ କି ହୀନିମାନ ।

ଭୋକଉପାସରେ ଅସହ୍ୟ ଯନ୍ତ୍ରଣା ନ ସରେ ଦିନ
ଦିଅଁ ଦେବତାଙ୍କୁ କେତେ ଯେ ବିକଳେ କରନ୍ତି ଦାନ ।
କାହିଁକି କରନ୍ତି କାଠ ପାଷାଣକୁ ଅଯଥା ପୂଜା
ପ୍ରକୃତି ଉଡାଇ ଦେଇଗଲା ତାର ବିଜୟ ଧ୍ୱଜା ।

ଭାଂଗିଛି ମନ୍ଦିର ଦେବାଦେବୀ ମୂର୍ତ୍ତି ଯାଇଛି ଭାସି
ଦିଅଁ ତ ଅଘରୀ ମଣିଷକୁ ସାହା ହେବେ କି ଆସି ।
ନିରୁପାୟ ହୋଇ ରିଲିଫ୍‌କୁ କରିଅଛନ୍ତି ଆଶା
ନେତା ମନ୍ତ୍ରୀମାନେ ହୁଅନ୍ତେ କି ଆସି ସାହା ଭରସା ।

ଭୋଅଟ ସମୟ ଆସିଲେ ନେତାଙ୍କ ହୋଇବ ଭେଟ ।
ସେତେବେଳେ ସିନା ବାହାର କରିବା ନୂଆ ନୋଅଟ
ରିଲିଫ୍‌କୁ ନେଇ ଧକାହାତୀଙ୍କର ଚାଲିଛି ଖେଳ
ସେମାନଙ୍କ ଖେଳ ଏମାନଙ୍କ ପାଇଁ ହୋଇଛି କାଳ ।
କେତେ ହେରଫେର, ଚାଉଳ କମ୍ବଳ ବାଟମାରଣା
କୋଟିଏ ଟଙ୍କାର ପଲିଥିନ ସ୍କାମ ପଡିଛି ଜଣା ।

ଆହାରେ ମଣିଷ କାହିଁ ସେ ବଡିମା ଧନଜନର
ପ୍ରକୃତି ପ୍ରଳୟ ଆଖି ପିଛୁଳାକେ କରିଲା ଚୁର,
କାହିଁ କେଉଁ ଦିଅଁ କାହିଁ କେଉଁ ନେତା କେହି ତ ନାହିଁ,
ଗରିବ ଲୋକର ଦୁଃଖ ବୁଝି ସାହା ହୋଇବା ପାଇଁ ।✵

⌘ ହାଟବଜାର, କଟଣୀ

ରଶ୍ମିରେଖା ମିଶ୍ର

# କବିତା

ସେ ତ ଦରଦୀ ମନର ଭାବଟିଏ
କେବେ ଗଢ଼ିଦିଏ ସୁନାର ସଂସାର
କେବେ ପୁଣି ଭାଙ୍ଗେ ଲୁହାର ପାହାଡ଼
ତା' ଭାଷାରେ ଫୁଟେ ନଈରେ କମଳ
ଆକାଶେ ବୋଇତ ଭାସିଯାଏ ।

ସେ ତ କୁଆଁରୀ ମନର ସ୍ୱପ୍ନଟିଏ
କେବେ ବାଢ଼ିଦିଏ ପ୍ରେମର ପଖାଳ
କେବେ ବିଞ୍ଚିଦିଏ ଫୁଲର ସକାଳ
ନିମିଷକେ ଚଢ଼ି ପକ୍ଷୀରାଜ ଘୋଡା
ପରୀ-ରାଇଜକୁ ବୁଲିଯାଏ ।

ସେ ତ ଲାଜକୁଳୀ ନବ ବଧୂଟିଏ
କେବେ ସେ ସରଳ ପ୍ରୀତି ଢ଼ଳଢ଼ଳ
କେବେ ପୁଣି ଲାଗେ ନିହାତି ଜଟିଳ
ମନକୁ ଛୁଇଁଲେ ସାଥିଟିଏ,
କେବେ ଜଟିଳ ଅଙ୍କର ସୂତ୍ରଟିଏ ।

ସେ ତ ମରମ ତଳର ଦାଗଟିଏ
କେବେ ଦେଇଯାଏ ଲୁହ ଝରଣା
କେବେ ପିନ୍ଧାଏ ହସର ଗହଣା
ମନକୁ ପାଇଲେ ନାଚି ନାଚି କେବେ
ଛାତି ତଳେ ସିଏ ଲୁଚିଯାଏ
ସେ ତ ମରମ ତଳର ଦାଗଟିଏ !✸

✱ ମା: ଗୌରହରି ମିଶ୍ର, ଗାନ୍ଧୀନଗର, କଟଣୀ

चिन्मयी मिश्र

# ପରିବର୍ତ୍ତନ

ମୁଁ କ୍ଷୁଦ୍ର ବୋଲି,
ମୋର ଅଯୋଗ୍ୟପଣ ଲୁଚାଇଦେଲ
କ୍ଷୁଦ୍ରରୁ କ୍ଷୁଦ୍ରତର ସାଜି ମୋ'ଠି
ସମସ୍ତ ସ୍ନେହ ପ୍ରେମ ସମର୍ପି ଦେଲ ।
ଉକୁଟି ଉଠୁଥିବା ପ୍ରେମ ମୋର
ଶବ ସାଜି ମନ ତଳେ ନୀରବି ଶୋଇଲା,
ନ ପାରିଲ ଜାଣି ତୁମେ
କାମନା ମୋ' କେତେବେଳେ ଭକତି ସାଜିଲା ।

ଚିନ୍ମୟୀ ମିଶ୍ର
ଗାନ୍ଧୀନଗର, ଜଟଣୀ

ଅକ୍ଷୟ କୁମାର ଶତପଥୀ

# କ୍ଳାନ୍ତ ଅପରାହ୍ନ

ଏକ କ୍ଳାନ୍ତ ଅପରାହ୍ନରେ
ସମୁଦ୍ରର ବେଳାଭୂମିରେ ନିଜକୁ ହଜାଇ ଦେଇଥିଲି ।
ସମୟେ ସମୟେ ଝାଉଁବଣ, ସୁପ୍ତ ରାସ୍ତା ଆଡେ
ଆଖି ମୋର ବୁଲୁଥିଲା
କେବେ ପୁଣି ଅସ୍ତମିତ ସୂର୍ଯ୍ୟଙ୍କ ଆଡ଼କୁ ।
ଚାଲୁ ଚାଲୁ ପାଦ ଦୁଇଟି ମୋର ଚାହିଁଲେ ବିଶ୍ରାମ
ବାଲିର ଶେଯରେ ।
ଅଦୂରରୁ ଆସୁଥିଲେ ପାଲଟଣା ନୌକାସବୁ
ପୁଣି ଦୂରେ ଭାସୁଥିଲେ ମାଛ ଜାତିଜାତି ।
ଉଠୁ ଉଠୁ ପ୍ରକୃତିସ୍ଥ ହେଲି,
ରୋମାଞ୍ଚରେ ବୁଡ଼ିଥିଲେ ଶ୍ୱେତାଙ୍ଗ ଦମ୍ପତି ।
ଅନ୍ଧାର ଆସୁଥିଲା ଫେରିବାବେଳକୁ
କି ସୁନ୍ଦର ସୃଷ୍ଟି ପାଇଁ ଧନ୍ୟ ଧନ୍ୟ କହି ଈଶ୍ୱରଙ୍କୁ
ଉଠାଇଲି ପାଦ ଫେରିବାକୁ ।

ରାମଚନ୍ଦ୍ରପୁର ବଜାର, ଜଟଣୀ-୫୦

ମହେନ୍ଦ୍ର ପ୍ରସାଦ

# ସମୟ

ସମୟର ବାଲିଶେଯେ
ଆମେ ଦୁହେଁ ତୋଳିଅଛେ ମୈତ୍ରୀର ମନ୍ଦିର
ସେଥିରେ ଅନୁଭବର ନେତ ଫରଫର ।

ମୁଁ ମାନେ ନାହିଁ କିଛି-
ପୁଣ୍ୟ ଓ ଦୁର୍ଭାଗ୍ୟ
ଶବ ଓ ସତ୍ୟ
ଦୃଶ୍ୟ-ଦୃଶ୍ୟାନ୍ତର
ବିଶ୍ୱାସ ଓ ସଂଶୟର
ମିଛ ଲୁଚକାଳି ।

ଭୋଗ ମୋର ଭାଗ୍ୟ
ତାକୁ ନେଇ ଗଢ଼ା ବସୁନ୍ଧରା;
ପ୍ରତିଜ୍ଞାର ସାମାନ୍ୟ କଥନ
ଶବ୍ଦର ଆତଙ୍କ ଯେତେ
ମୋ ପାଇଁକି ମୂଲ୍ୟହୀନ, ଅବାନ୍ତର
ମୈତ୍ରୀ ଆଗେ ଜୀବନର ଫନ୍ଦି ଓ ଫିକର
ସବୁ ଅର୍ଥହୀନ,
ସମୟର କପାଳରେ ଯେତେସବୁ '
ଅଳଙ୍କାର, ବିଜୟ ଚନ୍ଦନ ।

ସମୟ ଶିଖାଏ ମୋତେ
ବଂଚିବାର ସୁଦୀର୍ଘ କାହାଣୀ,
ଚାଲିବାକୁ ବାରମ୍ବାର ଡାକେ
ମୈତ୍ରୀର ନୀଳ ଅରଣ୍ୟାନୀ । ✹

✉ ଗୋପବନ୍ଧୁନଗର, କଟଣୀ - ୭୫୨୦୫୦

ନିରୁପମା ଦାଶ

# ନୀରବତାର ସ୍ୱର

ସକାଳଟା ଶୁନ୍‌ଶାନ୍, ସନ୍ଧ୍ୟା ଲାଗେ ବିଳମ୍ବିତ
ଧରା ଆଜି ଶ୍ରାନ୍ତ, କ୍ଲାନ୍ତ ଝରିଥିବା ଫୁଲର ପାଖୁଡା;
କାହା ମୁହେଁ ଖୁସି ନାହିଁ, ଓଠରେ ବି ହସ
କ୍ଷୀଣ ଶବ୍ଦଟିଏ ଭରିଦିଏ ଶଙ୍କାରେ ହୃଦୟ ।

ରାସ୍ତାଘାଟ ଶୁନ୍‌ଶାନ୍,ଲୋକମାନେ ଆତଙ୍କିତ,
କେଉଁ ଏକ ଅଜଣା ଭୟରେ
ଚାରିଆଡେ ନିରାଶାର ଛାଇ
ସ୍ୱାର୍ଥ ଆଉ ଛଳନାର ବିସ୍ତାରିତ କାୟା,ମୃତ୍ୟୁ ବିଭୀଷିକା,
ହାହାକାର, ନିଃଶବ୍ଦ କାନ୍ଦଣା, ବେଦନାରେ ମଖା ।
ତୁହାଇ ତୁହାଇ ଶୁଭେ ନୀରବତା ସ୍ୱର,
ମଣିଷର, ଯାତନାର ଅନ୍ତର ସ୍ୱାକ୍ଷର । ✸

ଖ ଗାନ୍ଧୀ ନଗର, ଜଟଣୀ

ମନୋରମା ଦାଶ

# କାହାକୁ ଖୋଜେ

ମରୁଭୂମି ବାଲୁକାରେ, ଶ୍ରାବଣର ଅମାନିଆ ଧାରେ
କିଛି ଖୋଜେ ମୁହିଁ, ହେଲେ ଜାଣେ ନାହିଁ ।
ଅତୀତ ପାରେନା ବୁଝି ନଈର ଢେଉରେ, ମନ୍ଦିର ବେଢ଼ାରେ ।
ନଦୀର ତରଙ୍ଗ କରେ ମୋତେ ବି ନିରାଶ,
ମଣିଷର ମିଛପଣ ମୋତେ ଦିଏ
ହାତଗଢ଼ା ଖେଳନାର ମିଠା ଅପଯଶ ।
ଅତିକ୍ରମ କରିଛି ମୁଁ କେତେ ଯେ ଦୁର୍ଗମ ପଥ
ଅନ୍ତହୀନ ଖୋଜିବାକୁ ସାଥୀ କରି
ପ୍ରାପ୍ତିର ପୁଲକ ନାହିଁ
ତଥାପି ମୁଁ ଖୋଜୁଥାଏ କାହାକୁ ଯେ ଜାଣିପାରେ ନାହିଁ । ✸

ଖ ଗାନ୍ଧୀ ନଗର, ଜଟଣୀ

ସୂର୍ଯ୍ୟ ମିଶ୍ର

# ଅଳ୍ପବୟସ

ନିରପରାଧ ଅଳ୍ପବୟସ । ନା ଜାଣିଲା ସୌଭାଗ୍ୟ ।
ନା ସୌଜନ୍ୟ । ନା ପ୍ରେମ, ନା କବିତା ।

ଅଳ୍ପବୟସର ଭବିଷ୍ୟତ ଠିକଣା ଲେଖିଲେ ଗୁରୁଜନମାନେ ଓ
ବାଣ୍ଟି ଚାଲିଲେ ନିଜ ନିଜର ନିର୍ଦ୍ଦୟ ଆଧିପତ୍ୟ !

ବୟସ୍କମାନଙ୍କର ସବୁ । ସବୁକିଛି ଇ ବୟସ୍କ, ସଂଭ୍ରାନ୍ତ ସତେ ଯେପରି !
ପ୍ରେମ ଜିଦ୍ ପୁରାଣ ବଗିଚା, ଏପରିକି ସଂସାର !

ଅଳ୍ପ ବୟସକୁ ସେମାନେ କହିଲେ-
ଦେ' ଆଂଗୁଠି : ଦେଲା, ଦେ' ପ୍ରେମ : ଦେଲା, ଦେ' ମୁକୁଟ : ଦେଲା
ଦେ' ଦେହ, ହୃଦୟ : ଦେଲା
ଦେ' ତୋ ବୟସର ମହାର୍ଘ ସଫଳତା : ତା' ବି' ଦେଲା ।

ସଂଭ୍ରାନ୍ତ ବୟସ୍କ ଗୁରୁଜନମାନେ ଜାଣନ୍ତି ସବୁକଥା :
ଅଳ୍ପବୟସରେ କିଏ ଦେଖାଇଦେଲା ବିଶ୍ୱରୂପ, କିଏ ମାରିଦେଲା ମୁଂଡି
କୋଣାର୍କର, କିଏ ଗୋଡ଼ରେ ପେଲିଦେଲା ସିଂହାସନ, କିଏ ହାତ ଯୋଡ଼ିଲା ।
ଠିଆହେଲେ ଈଶ୍ୱର, କିଏ ନାହିଁ କରିଦେଲା ଯେ ମିଳିଗଲା ସ୍ୱାଧୀନତା,
କିଏ ଡାକିଦେଲା ତ ଚିରିହୋଇଗଲା ଅତ୍ୟାଚାରୀର ଦେହ !

ସେମାନଙ୍କର ଆଖି ନାହିଁ ସତରେ ଦେଖିବାକୁ
କେମିତି ଖୁବ୍ ଶୀଘ୍ର ବଦଳିଯାଏ
ଅଳ୍ପ ବୟସର ପୋଷାକ, ପ୍ରସାଧନ
ପୁଣି ପ୍ରତାରିତ ଆଗ୍ରହ । ✹

ଅ ସର୍ଦ୍ଦାର ପଟେଲ ମାର୍ଗ, ଜଟଣୀ - ୭୫୨୦୫୦

ତ୍ରିଲୋଚନ ମହାପାତ୍ର

# ମୋ ପରି ହେବ ଆସ

ଫୁଲଟି ପରି ଫୁଟିବି ମୁହିଁ ବିତରି ଦେବି ବାସ,
ମୋଅରି ପରି ହୋଇବ କିଏ ଭାଇଭଉଣୀ ଆସ ।
ଦୀପଟି ପରି ଜଳିବି ମୁହିଁ ଆଲୁଅ ଦେବ ଭରି,
ଭାଇଭଉଣୀ ଆସ କିଏ ସେ ହୋଇବ ମୋ' ପରି ।
ଝରଣା ପରି ଝରିବି ମୁହିଁ କୁଳୁକୁ କୁଳୁ ଗାଇ,
ମୋହରି ପରି ହୋଇବ କିଏ ଆସ ଭଉଣୀ ଭାଇ ।
ଚାଷୀଟି ସମ କରିବ କାମ ଫୁଟାଇ ଓଠେ ହସ,
ମୋହରି ପରି ହୋଇବ କିଏ ଭାଇଭଉଣୀ ଆସ ।

ସଇନ ସମ ଜଗିବି ଦେଶ ନଥିବ କାରେ ଭୟ,
ଭାଇ ଭଉଣୀ ଗାଇବା ଆସ ଜୟ ଭାରତ ଜୟ । ☀

ଃରାମଚନ୍ଦ୍ରପୁର ବଜାର, ଜଟଣୀ - ୭୫୨ ୦୫୦

ସସ୍ମିତା ପରିଡ଼ା

# ଝୁମୁରୁ ଝାଇଁ

ଝୁମୁରୁ ଝାଇଁ ଝୁମୁରୁ ଝାଇଁ, ଖରା ମାରୁଅଛି ଟାଇଁ ଟାଇଁ
ଲସି, କୋଲ୍‌ଡ୍ରିଙ୍କ ବଳଉଛି ମନ, ଆଖୁ ରସ ଡାକେ ଆସ ଭାଇ ।
ଝୁମୁରୁ ଝାଇଁ ଝୁମୁରୁ ଝାଇଁ, ଝାଞ୍ଜିବାଆ ବହେ ସାଇଁ ସାଇଁ
ତରଭୁଜ ଭାଇ ଦାନ୍ତ ନିକୁଟୁଛି, ପଖାଳ ଭାତକୁ ହାଇଁ ପାଇଁ ।
ଝୁମୁରୁ ଝାଇଁ ଝୁମୁରୁ ଝାଇଁ, ଖରାଛୁଟିକୁ ଚାହିଁ ଚାହିଁ
ପରୀକ୍ଷା ସରିଲା କୁନା କୁନିଙ୍କର, ମାମୁଁଘର ଯିବେ ଛୁଟି କଟେଇ ।

ଝୁମୁରୁ ଝାଇଁ ଝୁମୁରୁ ଝାଇଁ, ପଙ୍ଖା ଘୁରୁଅଛି ଘାଇଁ ଘାଇଁ
ଘଡିଘଡିକରେ ଶୁଖିଯାଏ ତଣ୍ଟି, ରାସ୍ତା କଡେ ଲୋଡା ଗଛର ଛାଇ ।
ଝୁମୁରୁ ଝାଇଁ ଝୁମୁରୁ ଝାଇଁ, ରାସ୍ତା କଡେ ଗଛ ଲଗାଅ ଭାଇ
ଗଛ ଲଗାଇବା ଭଲକାମ ଅଟେ, ଦଣ୍ଡେ ବସିଯିବ ବାଟୋଇ ଭାଇ ।☀

ଅ ଟ୍ରାଫିକ୍ କଲୋନୀ, ଜଟଣୀ

ତିଲୋତ୍ତମା ମଲ୍ଲିକ୍

## ଝରଣା

ଝରଣା ଝରଣା ମୋ ଟିକି ଝରଣା
କେଡେ ସୁନ୍ଦର ତୋ ଘରକରଣା
ବଣ ମୂଳକରେ କରିଛୁ ଘର
ବା ବତାସକୁ ନାହିଁ ତୋ ଡର
ଉଚ୍ଚ ପରବତେ ଖେଳୁଛୁ ଖେଳ
ଗଛପତ୍ର ସବୁ ତୋ ସାଥୀମେଳ
ତୋ ପାଣି ଶୀତଳ ଅତି ନିର୍ମଳ
ନିରିବଳ ଜନେ ଦେଉଛୁ ବଳ
ଅମୃତ ପରାଏ ତୋହର ନୀର
ସେ ନୀରରେ ଶୋଷ ମେଣ୍ଟେ ସବୁର
ଭାରି ପରିଶ୍ରମୀ ଅଟୁଲୋ ତୁହି
କୁଳୁକୁଳୁ ଗୀତେ ମନ ତୁ ମୋହି
ପାପ ହିଂସା ନାହିଁ ତୋହର ମନେ
ତୋତେ ମୁଁ ଭଜୁଛି ନିୟତ ମନେ
ବିଭୁ ପଦକରେ ଏଇ ମୀନତି
ତୋହରେ ପରାଏ ନିକେ ହୁଅନ୍ତି । ☀

ଅ ମୁଣ୍ଡଳ, କନ୍ତିଆ, ଜଟଣୀ - ୭୫୨୦୫୦

গ ল্‌ প

বିପିନ ବିହାରୀ ମହାନ୍ତି

# ତଥାପି ପୁତ୍ର

ଦୁଆର ବନ୍ଧର ବାଡ଼କୁ କାଛ ଆଡୁଆଳରେ ସଦାନନ୍ଦ ଶୁଣୁଥିଲେ ପୁତ୍ର ନିତ୍ୟାନନ୍ଦର ଗର୍ଜନ - 'ତୁମେ ଜାଣିନାହଁ ମାଉସୀ, ମୋ ବାପା ସିନା ଏତେ ପଢ଼ିଛନ୍ତି, ପ୍ରକୃତରେ ତାଙ୍କଠୁ ବଳି ମହାମୂର୍ଖ କେହିନାହିଁ । ମୋତେ ତାଙ୍କ ନୀତିଗୁଡ଼ାକ ଆଦୌ ପସନ୍ଦ ନାହିଁ । ମୁଁ ଗୋଟେ ଇଂଜିନିୟରିଂ ପାସ କରିଛି; କାଲିକି କାଲି ଚାକିରୀ ହେଲେ ମୋ ପ୍ରଭାବ ପ୍ରତିପତ୍ତି କେଉଁଠି ହେବ; ସେଥିରେ ମୋତେ କହିବେ- ବଗିଚାରେ କାମ କର, ମାଟି ହାଣ, ଘଛକାଟ ଏବଂ ଯେଉଁକାମଗୁଡ଼ାକ ମୋ ପସନ୍ଦ ନୁହେଁ, କହିବେ, ତାକୁ ହିଁ କର ! ମଣିଷର ତ ପୁଣି ଗୋଟେ ପ୍ରେଷ୍ଟିଜ୍ ଅଛି ।'

-ବାପା ଓ ମାଙ୍କ ପାଖରେ ପୁଅ କ'ଣ ପ୍ରେଷ୍ଟିଜ୍ ଦାବୀ କରେ କି ନିତୁ । କହିଲେ ଶ୍ରୀମତୀ ସଦାନନ୍ଦ । -ହେଲା, ଘରେ ପରା ଜଣେ ବନ୍ଧୁ ଶୋଇଛନ୍ତି ! ତୁ ଏମିତି ଗର୍ଜିଲେ, ସେ କ'ଣ ଭାବିବେ କହିଲୁ ? ତୋତେ ହାତ ଯୋଡୁଛି ବାପା, ନେହୁରା ହେଉଛି, ଅନ୍ତତଃ ସେ ଗଲାଯାଏଁ ତୁନି ପଡ଼ିଲୁ । ବାପାଙ୍କ ସମ୍ମାନ ରହିବଟି ?

-ବାପାଙ୍କ ସମ୍ମାନ, ବାପାଙ୍କ ସମ୍ମାନ... ବାପାଙ୍କ ସମ୍ମାନ, ତୋର କ'ଣ ଆଉ କିଛି କହିବାର ଅଛି ? ଯେଉଁ ବାପ ପୁଅର ସମ୍ମାନ...।

-ନିତୁ, ତୁ କାହାକୁ କ'ଣ କହୁଛୁ କହିଲୁ ?... ହଉ ହେଲା, ସେ ବନ୍ଧୁ ଯାଆନ୍ତୁ, ଆମର ଯଦି କିଛି ଭୁଲ ରହିଯାଉଛି, ପଛେ ଯୋତାରେ ପିଟିବୁ, ଏମିତି ଗର୍ଜେ ନାହିଁ । ସେ କି ଧାରଣା ନେବେ କହିଲୁ ?

-କାହିଁକି ? ତାଙ୍କ ଘରେ କ'ଣ ଏମିତି କଳି ତକରାଳ ନାହିଁ, ପାଟିତୁଣ୍ଡ ନାହିଁ, ଖାଲି ଆମ ଘରେ ଅଛି ? ଏଠି ଗୋଟେ ପାଲା ଚାଲିଛି ! ଠିକ୍ ଅଛି, ସେ ଆସିଛନ୍ତି ଯେତେବେଳେ ଏ ଘରକୁ ଚିହ୍ନନ୍ତୁ, ମୋ ବାପାଙ୍କୁ ଚିହ୍ନନ୍ତୁ, ସମସ୍ତଙ୍କୁ ଚିହ୍ନନ୍ତୁ ।.. ବୁଝିଲ ମାଉସୀ, ମୁଁ ଗୋଟେ ଇଂଜିନିୟର । ମୋର ପୁଣି କିଛି ପକେଟ୍ ମନି ଅଛି କି ନାହିଁ ! ପଚାରିଲ, ନାଇଁ ପଚାରିଲ, ଏମାନେ କେତେ ମାସକୁ ଦିଅନ୍ତି ?

-ହେଲା ଇଂଜିନିୟରିଂ ପାସ୍ କରିଛ । ଇଂଜିନିୟର ତ ଏଯାଏ ହୋଇନାହଁ । କିଛି ଗୋଟେ କରି ନିଜ ପକେଟ ଖର୍ଚ୍ଚ ଉଠାଉନ ? ବାପା ତ ପୁଣି ତିନି ତିନିଟା ଛୁଆଙ୍କ କଥା ବୁଝିବେ ?... ଆମ ଘରର ପିଲାଏ ତ ପୁଣି ଆମକଥା ବୁଝୁଛନ୍ତି, ଶାଗ ପଖାଳ କି

ଚଳଉଛନ୍ତି ! ସେମିତି ତୁମେ କିଛି ଟିଉସନ କର, ନୋହିଲେ ଅନ୍ୟକିଛି ଧନ୍ଦା କର । - କହିଲେ ନନ୍ଦୁଣୀ ଓରେଫ୍ ରେଡିଓ ।

-ମୁଁ ଚାଷବନ୍ଦୀର ଛୁଆ ନୁହେଁ ମାଉସୀ । ମୋ ଦିହାତି ସେଗୁଡାକ ହେବନାହିଁ । ମୋ ଟ୍ରେଡ ଛଡ଼ା ମୁଁ ଅନ୍ୟ କିଛି କରିବି ନାହିଁ... ଏଇ ଦେଖୁନ, ମୋର କଲିକତାରେ ଗୋଟେ ଇଣ୍ଟରଭିଉ ଅଛି । ମୋର ହଜାରେ ଟଙ୍କା ଦରକାର । ଏମାନେ ପାନ ଖାଇବାକୁ ପଇସାଟିଏ ଦେଉନାହାନ୍ତି, ହଜାରେ ଟଙ୍କା ଦେବେ ! ଏଇ ପୋଡିଲି ସେ ଇଣ୍ଟରଭିଉକାର୍ଡ ।

-ଏତିକି କହି ଉଠିଲେ ନିତୁ । ଜାକିଲେ ଡିଆସିଲି ।

ଏତିକିରେ ଘରଭିତରକୁ ପଶିଗଲେ ସଦାନନ୍ଦ । ଦୁଇପ୍ରାଣୀ ନିତୁଙ୍କର ହାତ ଧରିନେଲେ । କାଗଜ ଖଣ୍ଡିକ ଛଡ଼ାଇ ନେଲେ । ନିତୁଙ୍କ ଆଖିରେ ନିଆଁ । ଆଉ ସେ ନିଆଁ ଆଗରେ କେତେ ଅସହାୟ ଏ ଦୁଇଟା ପ୍ରାଣୀ । ହାତଯୋଡି ଛିଡା ହୋଇଥାନ୍ତି ଶ୍ରୀ ସଦାନନ୍ଦ, ଶ୍ରୀମତୀ ଥରୁଥାନ୍ତି ଇଜ୍ଜତ ଯିବା ଭୟରେ । ଦୁହିଁଙ୍କ ଆଖିରେ ଲୁହ । କି ଦୁଃଖ ! ସ୍ରଷ୍ଟାର ସୃଷ୍ଟି ପାଖରେ କି ଦୟନୀୟ ଅବସ୍ଥା ! କି ନାଚାର !

ନନ୍ଦୁଣୀ ଉଠିଲେ । ଗଲାବେଳେ କହିଗଲେ - ଏଗୁଡାକ ଭଲ ହେଉନି ନିତୁ । ତୁମେ ପାଠୁଆ ପୁଅ । ଘରେ ବନ୍ଧୁ ଅଛନ୍ତି, ଏପରି ଆଚରଣ ଆଦୌ ଶୋଭନୀୟ ନୁହେଁ । ବାପା ବୋଉ ଦି'ଟା କେତେ କାକୁତି ମିନତି ହେଉଛନ୍ତି । ତୁମକୁ ଟିକିଏ ଦୁଃଖ ଲାଗୁନି ! ଆମେ ତ କେଉଁ କଲେକଟର ବା ଗଭର୍ଣ୍ଣର ଛୁଆ ନୁହେଁ ଯେ କହିଲା ମାତ୍ରେ ସବୁ ହୋଇଯିବ । ରୋଗିଣା ବାପଟା କେତେ କଷ୍ଟ କରି ମଣିଷ କରିଛନ୍ତି । ତାଙ୍କର ତ ପୁଣି ସୁବିଧା ଅସୁବିଧା ଅଛି । ଏଗୁଡାକ ତ ତୁମେ ପିଲାଏ ହୋଇ ବୁଝିବ !

ଖାଲି ସେତିକି ନୁହେଁ, ସଦାନନ୍ଦଙ୍କୁ କହିଲେ -ଯାହା କୁହନ୍ତୁ, ମୁଁ ଭାବିଥିଲି, ନିତୁଟା ଗୋଟେ ଭଲପିଲା । ହେଲେ ଏତେ କଦର୍ଯ୍ୟ ପ୍ରକୃତି ଅଛି ବୋଲି ମୋର ବିଲ୍କୁଲ ଧାରଣା ନଥିଲା । ମୋ ପିଲାଏ, ନିତୁଠୁ ହଜାରେ ଗୁଣ ଭଲ । ଏହାଙ୍କରତ ଦୟା, ମାୟା କି ସ୍ଥାନ, କାଳ, ପାତ୍ର ନାହିଁ । ବାବାରେ, କି ଭୟଙ୍କର ! ଆମେ ଦି'ଦିଟା ବାହାର ଲୋକ ଥିଲାବେଳେ ଯଦି ବିବେକ କାମ କରୁନାହିଁ, ଅନ୍ୟବେଳେ ତୁମ ଦି'ଟାକୁ ସେ କ'ଣ କରୁନଥିବେ ? ଗୋଟାଏ ପୁଅ ବୋଲି ଭଲ ସମ୍ଭାଳିଛ ତୁମେ !

ସଦାନନ୍ଦ ଭାବୁଥିଲେ । -କାହାକୁ ଦେଖାଇବେ ଅଯାଗା ଘା' । କାହା ଆଗରେ ବିକିବେ ଏ ଘର ଗୁମର । କେମିତି କାହାକୁ ଶୁଣାଇବୁ ଏ ଦୁଃଖ ।

ନନ୍ଦୁଣୀଙ୍କୁ ସାଇପଡିଶାରେ ହା'ଲେ ଭୟ । ସେ ଯଥାର୍ଥରେ ରେଡିଓ, କଂସାରୀ ଘରର ପାରା । ଏଇଠି କହିଲେ, କୋଉଠି ଉଠିଲାଣି କଥା । ଏଇ ଘରର ବ୍ୟକ୍ତିଗତ ଗୁମର ତା' ପାଇଁ ବାକିଥିଲା । ଘରଢ଼ିଙ୍କି କୁମ୍ଭୀରର ପ୍ରଶ୍ରୟ ନେଇ, ଏବେ କେଁଉଠି ସେ କ'ଣ ବିକିବ, ଠିକଣା ନାହିଁ । ଖୁବ୍ ବାଧୁଛି ତାଙ୍କୁ ।

ଖଣ୍ଡ ମଣ୍ଡଳକୁ ଏ ଘର ଏକ ଆଦର୍ଶ ଘର ବୋଲି ସମସ୍ତେ ଜାଣନ୍ତି । ପାଞ୍ଚପଚିଶିକୁ ସଦାନନ୍ଦ ଲୋକପରି ଲୋକଟିଏ । ସେମିତି ନ୍ୟାୟ ନିଷାପକୁ, କାହାର ଭଲମନ୍ଦକୁ ଏକା ସଦାନନ୍ଦ । ତାଙ୍କ କଥା ବେଦର ଗାର । ଶତ୍ରୁ ବି ଡରେ ତାଙ୍କ ନମ୍ରତା ଓ ଭଦ୍ରତା ପାଖରେ । ଏବେ ସିନା ଚାକିରୀ ଯୋଗୁଁ ବାହାରେ ଯାଗା କିଣି ଘରବାଡ଼ି, ହେଲେ ଗାଁରେ ଚଉଦପ୍ରାଣୀ କୁଟୁମ୍ବ । ଗାଁଟା ସାରା ଛିନ୍ନଛତ୍ର ହେଲେ ବି, ଏମାନେ ଏବେ ବି ଅଭିନ୍ନ ପରିବାର । ସମସ୍ତଙ୍କ ଆଖିରେ ଧର୍ମରାଜ ଯୁଧିଷ୍ଠିର । ଦୁଃଖସୁଖ, ହାତକୁ ପାଟି ଚଳଣିରେ, ସେ ସୁଖୀ । ଆଉ ଦୁଃଖ ଯେ ଶତ୍ରୁ ନଥିଲେ ବୋଲି ଚରମ ଶତ୍ରୁ ସାଜିଛି ନିଜର ପୁଅ ।

ଶ୍ରୀମତୀ କୁହନ୍ତି -ପୁଅ ବାପ ହେଲେ ବୁଝିବ ।

ସେ କୁହନ୍ତି - ସବୁ ମିଛ । ଅଙ୍ଗାର କଳା । ବୁଝିଲେ ବି ସେତେବେଳକୁ କିଛି ନ ଥିବ । ସାଧାରଣ ଅନୁତାପର ସେଠି ମାନେ ନାହିଁ ।

-ବଢ଼ିଲା ବୟସ, ବେକାର ଜୀବନରେ ପିଲାଏ ଏମିତି ହୁଅନ୍ତି ।

-ଥାଉ, ବୁଝାଅନା । ତୁମେ ବି ବୟସ ଦେଇ ଆସିଛ, ମୁଁ ବି ବୟସ ଦେଇ ଆସିଛି । ମୁଁ ମୋ ବାପର ଗୋଟାଏ ପୁଅ । ଏ ଆତ୍ମସାନ୍ତ୍ୱନା ମୋତେ ଆଉ ଶୁଣାଅ ନାହିଁ । ତୁମ ଛୁଆ ଅବାଟକୁ ଚାଲିଯାଉଛି ।

-ସଙ୍ଗ ଦୋଷ ।

-ସେଇକଥା କୁହ । ଆଉ ବି କିଛି କହିପାର । ମୋ ପୁଅ ମୋର ଏକ ଭୁଲ୍ ଠିକଣା । ଭୁଲ ପ୍ରସ୍ତାବନା ହୋଇପାରେ ।

ଗୋଟିଏ ବୋଲି ପୁଅ । ଦୁଇଟି ଝିଅ । ବଡ଼ଟି ଡାକ୍ତରୀ ପାସ୍ କରି କ୍ଲିନିକ୍ କରିଛି କେଇଦିନ ହେଲା । ତା' ହିସାବ ମଧ୍ୟ ତା'ର । ସାନର ପଢ଼ାଚାଲିଛି । ସଦାନନ୍ଦଙ୍କର ଉଦ୍ଦେଶ୍ୟ ଏକାବେଳେକେ ପୁଅ ଝିଅର କାମ ତୁଟାଇ ଦେବେ । ନିଅଣ୍ଟିଆ ପକ୍ଷକୁ ଅଲଗା ଅଲଗା ପାରିବେ ନାହିଁ । ସେଥିପାଇଁ ପାତ୍ରୀ ଓ ପାତ୍ରର ଯୋଗାଡରେ ସେ ବ୍ୟସ୍ତ । ଏ ଭିତରେ ପାତ୍ରୀ ମିଳିଗଲାଣି । ସମସ୍ତଙ୍କ ମନ ପସନ୍ଦ ନେଇ ଜବାବ ଦିଆ ସରିଲାଣି । ଯିବା ଆସିବା ଚାଲିଲାଣି । ଏ ପ୍ରସ୍ତାବରେ କାହାରି ଦ୍ୱିମତ ନଥିଲା । ଏଣୁ କୌଣସି କେଁ ର ପ୍ରଶ୍ନ ନଥିଲା ।

ସେଦିନ ଆସିଥିଲେ ଭାବୀ ବୋହୂର ଭାଇ ଉମେଶ । ଖାଇପିଇ ଶୋଇଥାନ୍ତି ମଝିଘରେ । ନିତ୍ୟାନନ୍ଦକୁ ସେ ଆଗରୁ ଦେଖି ନଥିଲେ । ତାଙ୍କୁ ଦେଖିବାଟା ତାଙ୍କର ନିଶ୍ଚୟ ଉଦ୍ଦେଶ୍ୟ ଥିଲା । କଥାରେ କହିଛି, ଘରଦେଖ, ବର ଦେଖ, କାଛ ଭାଙ୍ଗି କୁହ୍ନ ଦେଖ । ହେଲେ, ତାଙ୍କୁ ଦେଖି ନିତ୍ୟାନନ୍ଦ ଖସିଲେ, ଦିନ ଦୁଇଟାରୁ ତିନିଟା ହେଲା । ଆସିଲେ ନାହିଁ । ଏଣୁ ବାଧ ହୋଇ ଶ୍ରୀମତୀ ଗଲେ ତାଙ୍କ ଖଟିକୁ । ସାନଝିଅ ବି ଗଲା । ବାବୁ ଆସିଲେ । ଉମେଶ ଏଥର ଦେଖନ୍ତୁ । ତାଙ୍କୁ ଉଠାଇ ଦେବା । ସେ ମଧ୍ୟ ଶୀଘ୍ର ଘରକୁ ଫେରିବେ ବୋଲି କହୁଥିଲେ । ଆସନ୍ତାକାଲି ଦଶହରା ସଉଦା କରିବେ ।

ଆଗରୁ ଭାବୀ ଶ୍ୱଶୁର ଦୁଇଥର ଆସିଛନ୍ତି । ସବୁକିଛି ଠିକ୍‌ଥିଲା କିନ୍ତୁ ଏଥର ଯେ ଏପରି ବିଭ୍ରାଟ ଘଟିବ ଏକଥା କିଏ ଜାଣିଥିଲା ? ଘରେ ପଶୁ ପଶୁ ଆରମ୍ଭ । କି ପାଟି ! ଠିକ୍ ବେଳକୁ ରେଡ଼ିଓ ମଧ୍ୟ ଉପସ୍ଥିତ । ଦୁହିଁଙ୍କ ଆଳାପ ଏବଂ ନିଚ୍ଚୁର ଗର୍ଜନ ଗଗନ ପବନ ପ୍ରକମ୍ପିତ କଲା । ଦାଣ୍ଡଘରେ ସଦାନନ୍ଦ ଖବର କାଗଜ ପଢୁଥିଲେ । ଏଗୁଡ଼ାକ ଶୁଣି ତାଙ୍କ ମୁଣ୍ଡ ଘୁରାଇଲା । ଏ କି କଥା ! ଏ କି ଭୂମିକମ୍ପ !! ସେଇଥି ପାଇଁ ସେ ଉଠିକି ଗଲେ, ଆଗ କାଛ ପାଖରେ ସବୁ ଶୁଣୁଥିଲେ ।

ହଠାତ୍ ଏ ବିସ୍ଫୋରଣର କାରଣଟା ଯଦିଓ ସଦାନନ୍ଦ ଜାଣିନଥିଲେ ତେବେ ଗତକାଲି କଥା ମନେ ପକାଇଲେ । ଶ୍ରୀମତୀ ମାଗୁଥିଲେ ଟଙ୍କା । ପୁଅ କଲିକତା ଇଣ୍ଟରଭିଉ ଦେଇଯିବ । ସେ ରୋକ୍‌ଠୋକ୍ ମନା କରିଦେଲେ, କହିଲେ : ସବୁ ଅର୍ଜନ ତାଙ୍କ ପଢ଼ାରେ ଗଲା । ଝିଅ ବାହାଘରକୁ କିଛି ଟଙ୍କା ଆଉ ଜି.ପି.ଏଫ୍‌ରେ ଥିଲା । ତା'ରି ଚାକିରୀ ପାଇଁ । ଲକ୍ଷେ ଟଙ୍କା କାଢ଼ି ଲାଞ୍ଚ ଦେଇଛି ବର୍ଷେ ହେଲା । ଚାକିରୀ ଦେଖାନାହିଁ । ଟଙ୍କା ଫେରିବାର ନିଶ୍ଚିତତା ନାହିଁ । ଦେଲେ ମଲ, ନଦେଲେ ମଲ । ଇଏ ଏମିତି ଯୁଗ । ଦରମାରୁ ସବୁ କଟିଯାଉଛି । ଆଉ କୋଉଠୁ ଆଣିବି ? କିମିତିବା କୋଉଠୁ ଚୋରୀ କରିବି ? ମୋର ବା ଆଉ କୋଉ ସମ୍ବଳ ଅଛି । ଏମିତିତ କହି କହି କେତେଟଙ୍କା ବୋହୁଛି । ଫର୍ମପୂରଣ କରୁଛି । ଇଚ୍ଛାହେଲେ ଇଣ୍ଟରଭିଉ ଦେଉଛି, ନୋହିଲେ ନାହିଁ । ପଢ଼ାର ନା ଗନ୍ଧ ନାହିଁ । ଖାଲି ବଡ଼ ବଡ଼ କଥା କହୁଛି । ସେ ବୁଝୁନି ଆମେ କେତେକର ଲୋକ । ମୋର ତା'ଠି ବିଶ୍ୱାସ ନାହିଁ । ମୁଁ ଘାସରୁ ଉଠିଛି । ମୋତେ ବାଉଁଶ କଥା ଭଲ ଲାଗୁନି ।

ବୋଧହୁଏ ଟଙ୍କା ନଦେବାର ପ୍ରତିକ୍ରିୟା ହିଁ ଏହା । ଯା ବୋଲି ଆମେ ମାନ ମର୍ଯ୍ୟଦା ଭୁଲିଯିବା, ମଣିଷତ୍ୱ ହରାଇ ବସିବା !

ଠିକ୍ କହିହେଉନି । ସେଦିନ ଉମେଶ ନିଦରେ ଶୋଇଥିଲେ ନା' ଶୋଇବାର ଉପକ୍ରମ କରି ଏଗୁଡ଼ାକ ଶୁଣୁଥିଲେ । ଯଦି ଶୁଣିଥାନ୍ତି ଏହାଠୁ ବଳି ଦୁଃଖଦ ଓ ସାଙ୍ଘାତିକ କ'ଣ ଥାଇପାରେ ! ସାଢ଼େ ଚାରିଟା ବେଳକୁ ସେ ଉଠିଲେ । ଯିବାକୁ ବାହାରିଲେ । ସଦାନନ୍ଦ ଶ୍ରୀମତୀଙ୍କୁ କହିଲେ- ଟିକେ ତାକୁ କହିବ,ଅନ୍ତତଃ ନମସ୍କାରଟିଏ ପକାଇ ଦେଇ ଯାଉ ।

ସେ କାନ୍ଦି କାନ୍ଦି କହିଲେ -ମୁଁ ତୁମ ଗୋଡ ଧରୁଛି । ସେକଥା କୁହନି । ପୁଣି କ'ଣ ନିଆଁ ଜାଳିଦେବ, ତୁମ ମହତ ରହିବଟି ? ତାଙ୍କୁ କ'ଣ କେମିତି ବୁଝାଇ ବିଦାୟ କରିଦିଅ ।

ଝିଅ ଦି'ଟା ଏସବୁ ଦେଖି ଛାନିଆ । ଆଖିରେ ଲୁହ । ତଥାପି ସେମାନଙ୍କୁ ସଦାନନ୍ଦ କହିଲେ - ତୁମେ ଭଲା ତାକୁ ବୁଝା । ସେମାନେ ତାହା ହିଁ ଉତ୍ତର ଦେଲେ ।

ଶେଷକୁ ସେ ନିଜେ ଗଲେ । ଆଖିର ଲୁହ ଦେଲେ । ଫେରି ଆସିଲେ ଉମେଶଙ୍କ ପାଖକୁ । ଶ୍ରୀମତୀ କହୁଥିବାର ଶୁଣିଲେ -ସେ ଭାରି ଲାଜକୁଳା । କହୁଛି, ମୋର ଚାକିରୀ

ଚାକିରୀ ନାହିଁ । ଏଇନେ କାହା ପାଖରେ ଛିଡା ହେବାକୁ ମୋତେ କୁହନାହିଁ । ମୋତେ ଅଣ୍ଡରଏଷ୍ଟିମେଟ କରିବେ ।

ସଦାନନ୍ଦ କହିଲେ-ଏଇ ମୁଁ ପରା ଡାକିଲି ଯେ ସେହି କାଜକୁ ମନା କରିଦେଲା । ଛାଡ । ନୋହିଲେ, ସେ ସେମିତି ଅବାଧ ନୁହେଁ । ବାପା ତ ଦେଖିଛନ୍ତି, ଫଟୋ ତ ଦେଖିଛ । ପୁଣି କେବେ ଦେଖିବା ।

ଉମେଶ କିଛି ନ କହି ଉଠିଲେ । କିଛିଟା ପୂର୍ବାନୁମାନ ଥାଇପାରେ ଯଦି ଶୋଇ ନଥାନ୍ତି । କେବଳ ଗଲାବେଳେ ଏତିକି ପଚାରିଲେ-ବିଭାଘର କେବେ କରୁଛନ୍ତି ? ଆସନ୍ତା ବର୍ଷକୁ କରିବେ ତ ! ଅବଶ୍ୟ ଆମର ଏଥିରେ କିଛି କହିବାର ନାହିଁ କାରଣ ମୋ ଭଉଣୀର ପ୍ରତିବାଦର ସ୍ୱର ନାହିଁ । ଆପଣ ତାକୁ ଦୁଇ ତିନିବର୍ଷ ଧରି ବ୍ୟକ୍ତିଗତ ଜୀବନରେ ଜାଣିଛନ୍ତି । ସେ ମଧ୍ୟ ଆପଣମାନଙ୍କୁ ଭଲ କି ଜାଣେ । ଏଣୁ ଆମେ ଅନ୍ୟତ୍ର ଦେଖୁନାହୁଁ । ଟିକିଏ ଶୀଘ୍ର ହେଲେ ଭଲ ହୁଅନ୍ତା ।

ସଦାନନ୍ଦ କହିଲେ -ଆମର ଜାନିଯୌତୁକରେ ଲୋଭନାହିଁ, ତୁମେ ଜାଣ । କେବଳ ଝିଅଟି ଏ ଘରକୁ ଯୋଗ୍ୟର ହେବ ବୋଲି ମନ ବାନ୍ଧିଛି । ଏଯାଏଁ ଆସିଲେଣି । ସବୁ ସେହି ପ୍ରଭୁ, ତେବେ ପୁଅ କହୁଛି ଯେ ତା' ଚାକିରୀଟା ଯେତେ ସଅଳ ହେବ, ସେ ବିବାହ କରିବ । ମାନେ,ସେ ବିବାହ ପରେ ତା ଇଣ୍ଡିପେଣ୍ଡେଣ୍ଟ ଲାଇଫ୍ କଥା କହୁଛି । ଆଉ ତୁମେ ତ ଜାଣିଛ, ସେଇଥିପାଇଁ ପାସ୍ କରିବାର ବର୍ଷେ ନପୁରୁଣୁ କାରବାର କରିଛି ।

ସେତିକିରେ ସେ ଗଲେ ।

ଇଏ ଯେ ସେଦିନ ନିତୁଙ୍କର ପ୍ରଥମ ବିସ୍ଫୋରଣ ଥିଲା, ତାହା ନୁହେଁ । ଯେଉଁ ବର୍ଷଠୁ ବାବୁ ଇଂଜିନିୟରିଂ ପଢ଼ିଲେଣି, ସେବେଠୁ ପରିବର୍ତ୍ତନ ଦିଶିଲାଣି । କଥା କଥାକେ ବାପାଙ୍କୁ ଟକକର । ଯୁକ୍ତି । ସବୁକଥାରେ ତୁମ ବେଳକାଳ ଯାଇଛି, ତୁମ ଆଦର୍ଶ ଆଉ କାଟୁ କରୁନାହିଁ, ତୁମେ ଜଣେ ନିହାତି ନିର୍ବୋଧ... ଏମିତି ଅନେକ । ନିହାତି ଅସହ୍ୟ । ବେଳକୁ ଏମିତି କଥା କୁହନ୍ତି ଯେ ଋଷି ବାଳ ଛିଣ୍ଡାଇ ମରିବ । ହେଲେ କହିବେ କାହାକୁ ? ଶ୍ରୀମତୀ ଏବେକୁ ସିନା ବୁଝିଲେଣି, ନୋହିଲେ ସେ ତ ପୁରା ପିଲାଙ୍କ ପକ୍ଷ । ପିଲାଙ୍କ ପାଇଁ ଦାନ୍ତ ଲଗା । ସବୁ ନୀରବରେ ସହିବା ଛଡ଼ା ଆଉ କିଛି ଉପାୟ ନାହିଁ ।

କୌଣସି ପ୍ରଶ୍ନ ପଚାର ନାହିଁ ତାଙ୍କୁ । ଇଚ୍ଛାମତେ ଯିବା ଆସିବା । ଶୋଇବା ଉଠିବାର ଠିକଣା ନାହିଁ । ଯାହା ଯେତେବେଳେ ଦେଇଦିଅ । ମାସିକିଆ ପକେଟ ଖର୍ଚ୍ଚ ଦେବାରେ ସାମାନ୍ୟତମ ବିଳମ୍ବ ହେଲେ ଦେଖ ଲଙ୍କା ପୋଡି । ଜଳିଲା ନିଆଁ । ସତାରିକି କହିବାର ଯୁ' ନାହିଁ । ଆର୍ଥିକ ଦୁର୍ଗତିର ଦୁଃଖ କହିଲେ ଦାବୀ ଆହୁରି ଅଧିକ । ଦୁଃଖ ଆହୁରି ବଳାଏ । ଏଣୁ ମର କିମ୍ବା ସର, କର । ଦୁଃଖ କୁହନାହିଁ । ବୋଲହାକ ତେଣିକି ରଖ ।

ଏଇ ଚାକିରୀ ପାଇଁ ଲକ୍ଷେ ଗଲା । ହେବାର କି ଆଶା ଅଛି । ଏଥିରେ କି ଝିଅ ବାହାଘର । ଅସମୟ ଏବଂ ଅପ୍ରତ୍ୟାଶିତ ମୁହୂର୍ତ୍ତର ମୁକାବିଲା ପାଇଁ ପାଞ୍ଚପଇସା ନାହିଁ । ଗୋଟିଏ ପୁଅବୋଲି ସବୁ ସେଇଠି ଯାଇଛି । ଏଇକଥା ମନରେ ପଶେ- ପୁଅ ଯୋଗ୍ୟର ହେଲେ ଧନ କାହିଁକି ସଂଚୁ ଏବଂ ଅଯୋଗ୍ୟକୁ ମଧ୍ୟ ସେୟା । ସେ ମରି, ମରି ନାହାନ୍ତି । ବଂଚି ବି ବଂଚି ନାହାନ୍ତି ।

ଚାକିରୀ ସଂପର୍କରେ କିଛି କହିଲେ କହିବେ -ମୋ ପାଇଁ ବ୍ୟସ୍ତ ହେବା ଆପଣଙ୍କର କି ଦରକାର । କାହିଁକି ଏତେ ପ୍ରଶ୍ନ ? ମୋ କଥା ମୁଁ ବୁଝିବି ନାହିଁ ।

ଏଇ ଓ.ଏ.ଏସ୍. ବେଳକୁ ନିଜସ୍ୱ ଅବହେଳାରୁ ପରୀକ୍ଷା ଦେବାରୁ ବଂଚିତ ହେଲେ । ସଦାନନ୍ଦ ଏ ଚେଷ୍ଟା ଯୁଗରେ ଯାହା ଚେଷ୍ଟା କରିଥିଲେ, ପାଇବାଟା ସୁନିଶ୍ଚିତ ଥିଲା । ହେଲେ ପୁଅ... ଛାଡ । ବୋଧହୁଏ ସେଦିନ ସଦାନନ୍ଦଙ୍କର ହୃଦକ୍ରିୟା ବନ୍ଦ ହୋଇଯାଇଥାନ୍ତା । ସାରାରାତି ନିଶ୍ଚୁପ ହୋଇ ଯନ୍ତ୍ରଣା ପାଇଲେ । କେହି ବୁଝିଲେନି ମନକଥା । ଅଭିମାନ କରି ଉପାସ ରହିଲେ । ସମସ୍ତଙ୍କ ସହିତ ଆଳାପ ବନ୍ଦକଲେ । ହେଲେ କିଛି ପରିବର୍ତ୍ତନ ନାହିଁ । ବରଂ ନିତୁ କହିଲେ - ବାପା, ତୁଚ୍ଛାକୁ ଅଭିମାନ କରି ଲାଭ କ'ଣ ? ମୋର ଓ.ଏ.ଏସ୍. ଦରକାର ନାହିଁ । ମୁଁ ସେ ମାଡ଼ଖିଆ ଚାକିରୀ କରିବି ନାହିଁ ।

ବାସ୍, ସେତିକିରେ ସଦାନନ୍ଦ ଥଣ୍ଡା ।

ସେ କିନ୍ତୁ ନିଜେ ବୁଝେ ନାହିଁ ଯେ ତା' ବିଦ୍ୟାରେ ସେ ଗୋଟେ ସେମିତି କୃତୀ ଛାତ୍ର ନୁହେଁ । ପ୍ରତିଯୋଗୀ ଦୁନିଆରେ ଯେ କୌଣସି ପ୍ରତିଯୋଗିତାକୁ ମୁକାବିଲା କଲାଭଳି ନମ୍ୱର ମଧ୍ୟ ନାହିଁ । ନିଯୁକ୍ତି ତ ପରକଥା । ହୁଏତ ଅସମ୍ଭବ ମଧ୍ୟ ହୋଇପାରେ । ସେଥିରେ ଇଂଜିନିୟର ବୋଲି ଆତ୍ମଗର୍ବ କରି ଫୁଲି ଉଠି ଲାଭ କ'ଣ, ଯେଉଁଠି ତହୁଁବଡ଼ା ତହୁଁବଡ଼ା ଚାକିରୀ ଅପେକ୍ଷା କରି ବୟସ ଚାଲି ଯାଉଛି, ବେକାର ହୋଇଯାଉଛି ମଣିଷ । ସେଇଥି ପାଇଁ ଅନେକବାର ସଦାନନ୍ଦ ଦେଖାଇ କୁହନ୍ତି - ତୁମେ ଗ୍ରେଡ୍‌କଥା ଛାଡ । କିଛି ଗୋଟେ କର । ତୁମ ଗ୍ରେଡ ମିଳିଲେ ତାକୁ ଛାଡି ଦେବ ।

ତଥାପି ନା । ସେ ମୋଟେ ବୁଝୁନାହାନ୍ତି ନିଜ ପାରିବାର ପଣିଆ, ବୁଝୁନାହାନ୍ତି ନିଜ ବାପାଙ୍କର ଆର୍ଥିକ ସ୍ଥିତି ଓ ତାଙ୍କ ଜଂଜାଳ । ସେ ତ ଅର୍ଥବଳ, ଲୋକବଳ ଏବଂ ସବୁ ବଳରେ ଦୁର୍ବଳ !

ବି'ଦିଟା ପୁତୁରା ଇଂଜିନିୟରିଂ ଓ ଏମ୍.ଟେକ୍ କରି ପାଞ୍ଚସାତ ବର୍ଷ ହେଲା ବସିଛନ୍ତି । ସେମାନେ ତ ଏହାଠୁ ଅନେକ ଗୁଣ ଭଲ । ହେଲେ କିଏ କେମିତି ବୁଝାଇବ ! ଭାବିଥିଲେ, ପୁଅ ଚାକିରୀ କରିବ । ବୋହୂ ଚାକିରୀ କରିବ ଏବଂ ନିଜର ପେନସନ୍‌ରେ ଯାହା ମିଳିବ, ଝିଅମାନେ ବିଦା ହେବାରେ କିମ୍ୱା ଘର ଚଳିବାରେ କିଛି ଅସୁବିଧା ହେବନାହିଁ । ହେଲେ, ତାଙ୍କ ସ୍ୱପ୍ନ, ସ୍ୱପ୍ନରେ ରହିଲା ।

ସବୁଠୁ ଦୁଃଖ, ଅନ୍ୟମାନଙ୍କ ମୁହଁରେ ତାଙ୍କର ହଜାରେ ପ୍ରଶଂସା ଥାଇପାରେ, କିନ୍ତୁ ପୁଅ ମୁହଁରେ ସେ ଜଣେ ଅପଦାର୍ଥ । ସେ ଏକା ତାଙ୍କ ପ୍ରଥମ ନିନ୍ଦୁକ ।

ଏମିତି ବାପପୁଅଙ୍କ ସଂପର୍କ ନାହିଁ । ସାମ୍ନା ସାମ୍ନି ହେବାର ପ୍ରଶ୍ନ ଉଠୁନାହିଁ । ଏମିତି ବାରମ୍ବାର ଅପଦସ୍ତ ହେବା ଅପେକ୍ଷା, ପୁଅଠୁ ଦୂରେଇଗଲେ କ୍ଷତି କ'ଣ ? ଏଇ ପୁଅ ପାଇଁ ଶ୍ୱଶୁର କାନ୍ଦୁଛନ୍ତି, ଆହୁରି ଅନେକ କାନ୍ଦୁଛନ୍ତି । ତଥାପି ପୁଅ ।

ଶେଷଥର ପାଇଁ ଶ୍ରୀମତୀଙ୍କ ଦେହ ଛୁଇଁ ନିୟମ କହିଛନ୍ତି, ଏସଂପର୍କ ଏତିକି । ମୁଁ ବାପର ପୁଅ, ମାତ୍ର ପୁଅର ବାପନୁହେଁ । ମୋ ପାଇଁ ଟିକେ ବିଷ ନଚେତ୍ ସଂପୂର୍ଣ୍ଣ ନିର୍ବାସନ ବ୍ୟବସ୍ଥା କରିଦିଅ ।

ସେବେଠୁ ସବୁ ନୀରବତା ଭିତରେ ଚାଲିଛି ।

ଉମେଶ କିଛି କ୍ରିୟା ପ୍ରତିକ୍ରିୟା ଜଣାଇ ନାହାନ୍ତି । କେବଳ ସେମାନଙ୍କୁ କି ଉତ୍ତର ଦେବା ପୂର୍ବରୁ ଏବଂ ଅନ୍ୟମାନଙ୍କ ଆଗରେ ନିଜ ସମ୍ମାନ ହରାଇବା ପୂର୍ବରୁ, ଭାବୁଛନ୍ତି ବୋଧହୁଏ, ମାନସିକ ପ୍ରତିକ୍ରିୟା ଏବଂ ଯନ୍ତ୍ରଣାରେ ଭିନ୍ନ ଦଶରଥ ହୋଇ ଭିନ୍ନ ପୃଥିବୀରେ ପହଞ୍ଚି ଯାଇଥିବେ !

ସଦାନନ୍ଦ ଭାବୁଛନ୍ତି । ହାୟରେ ଅପ୍ରତ୍ୟାଶିତ ମୁହୂର୍ତ୍ତ ! ଅନ୍ତତଃ ଆଉଥରେ ନଆସ । ଯଦି ଆସିବୁ ଭିନ୍ନ ରୂପରେ ଆ' । ତଥାପି ଏଠି ପୁତ୍ର ବୋଲି ବାପାମାନେ ମରିଯାଉଛନ୍ତି !✺

⌘ ବିକାଶନଗର, ଜଟଣୀ, ଖୋର୍ଦ୍ଧା - ୭୫୨୦୫୦

---

ସ୍ନିଗ୍ଧା ସ୍ୱାଇଁ

# ଘର

ରାତିରେ ପବନର ବେଗ ବେଳକୁ ବେଳ ବଢୁଥିବା ଦେଖି ସନିଆ ଭାବୁଥିଲା ସେ ଘର ଛାଡି, ଗାଆଁ ଛାଡି ଆସି ଭୁଲ୍ କରିଛି । ତା'ର ମନେ ପଡୁଥିଲା ଗାଆଁ ଛାଡି ସହରକୁ ଆସିବା ଦିନର କଥା । ଭାଇଭାଗ ବଣ୍ଟାଆରା ଓ ଘର ବାଣ୍ଟିବା ନେଇ ଭାଇ ଭାଇ ମଧ୍ୟରେ ଲାଗିଥିଲା ତୁମୁଳ ଗଣ୍ଡଗୋଳ । ପୈତୃକ ଘର ଦୁଇ ବଖରାକୁ ତିନିଭାଇଙ୍କ ମଧ୍ୟରେ କିପରି ଭାଗ କରାଯିବ, ତାହା ଥିଲା କଳିର ମୂଳ କାରଣ । ସେ କହୁଥିଲା ଘର ମୋର, ସେ କହୁଥିଲା ଘର ମୋର । ସାନ ଦୁଇଭାଇଙ୍କର ବଚସା, କଥା କଟାକଟି ଦେଖି ପୁରା ନୀରବ ହୋଇଯାଇଥିଲା ତା' ସ୍ତ୍ରୀ । ଜଡ ପାଲଟି ଯାଇଥିଲେ ତା'ର ତିନୋଟି ପିଲା । କାରଣ ସେ ଥିଲା ଘରର ବଡପୁଅ । ବଡଭାଇ ବୋଲି ତାକୁ ଆଗ ବଖରାଏ ଘର ମିଳିଯାଇଥିଲା । ମଝିଆଁ ଭାଇ, ବିଭାଘର ପରେ ତାକୁ ମଧ୍ୟ ବଖରାଏ ଘର ମିଳିଯାଇଥିଲା ଆଉ ବାକି

ରହିଯାଇଥିଲା ସାନଭାଇ । ସେ ବିଭା ହୋଇନଥିଲା । ବାରଣ୍ଡାରେ ବାଉଁଶ ଖଟଟିଏ ପକେଇ ଶୋଇପଡୁଥିଲା । ତା'ର ମଧ୍ୟ ଏ ଭିତରେ ବିଭାଘର ଠିକ୍ ହୋଇସାରିଥିଲା । ଆଉ ମାତ୍ର ଆଠଦିନ ବାକିଥିଲା ବିଭାଘର । ସେ ଖୁବ୍ ଚିନ୍ତିତ ଥିଲା । ତାକୁ ହୁଏତ ବଖରାଏ ଘର ମିଳିବନି । ନୂଆ ବୋହୂଟିକୁ ଧରି ବାରଣ୍ଡାରେ ଚଳିବ କେମିତି ? ରୋଷେଇ ଘର କୋଣରେ ତାକୁ ଶୋଇବାକୁ ପଡିବ ବୋଧହୁଏ । ତା'ର ମନେ ମନେ ରାଗ ହୁଏ ଦୁଇଭାଇଙ୍କ ଉପରେ । ଖରା ନାହିଁ, ବର୍ଷା ନାହିଁ, ଶୀତ ନାହିଁ, ମେଲା ବାରଣ୍ଡାଟାରେ ପଡି ରହେ ବର୍ଷଯାକ । ମାଘ ମାସରେ ହାଡ଼ଭଙ୍ଗା ଶୀତରେ ବି କାହିଁ କୋଉ ଭାଇ ତ ତାକୁ ଦିନେ ଶ୍ରଦ୍ଧା କରି ଡ଼ାକିନି ଘର ଭିତରକୁ ଆସି ଶୋଇପଡିବା ପାଇଁ । କାଲି ଯେ ବାହାଘର ପରେ ସାନଭାଇ ପାଇଁ ସହାନୁଭୂତି ଦେଖାଇ ନିଜ ସ୍ୱାର୍ଥ ତ୍ୟାଗ କରି ଘର ବଖରାଟେ ଛାଡିଦେବେ ସେ ବିଶ୍ୱାସ ନଥିଲା ତା'ର । ତା' ମନ ଭିତରେ ଥିବା ପୁଞ୍ଜିଭୂତ ରାଗ ଆଗ୍ନେୟଗିରିର ତରଳ ଲାଭା ପରି ସେଦିନ ଉଦ୍‌ଗୀରଣ ହୋଇପଡିଥିଲା । ମଝିଆଁ ଭାଇ ବିଭାଘର ଖର୍ଚ୍ଚ କାଣ୍ଟଛାଣ୍ଟ କରିବାପାଇଁ କହିବାବେଳେ ସେ ଖୁବ୍ ଜୋରରେ ରାଗି ଉଠିଥିଲା ଏବଂ ସେହି ରାଗ ପ୍ରଳୟର ରୂପ ନେଇଥିଲା । ଦୁଇଭାଇଙ୍କ ମଧ୍ୟରେ ଯେମିତି ଝଡ଼ଟା ପ୍ରଳୟର ରୂପ ନେଇ ବହିଯାଇଥିଲା । ସନିଆ ମଝିରେ ପଶି ଦୁଇଜଣଙ୍କୁ ଶାନ୍ତ କରିବାକୁ ଚେଷ୍ଟା କରୁଥିଲେ ମଧ୍ୟ ପାରୁନଥିଲା । ଠିକ୍ ସେହି ସମୟରେ ତା' ଭାବନାରେ ବାଧା ଦେଇ ଦମ୍‌କା ଦମ୍‌କା ପବନ ପଶିଆସୁଥିଲା ତା' ଘର ଭିତରକୁ । ତା' ଫୁଙ୍ଗୁଳା ଦେହ ଓ ପିଲାମାନଙ୍କର ଚିରାସାର୍ଟରେ ପବନ ଯେମିତି ଘୂର୍ଣ୍ଣି ସୃଷ୍ଟି କରୁଥିଲା ସେମାନଙ୍କ ଦେହରେ । ଝିଅ ଦୁଇଟି ମାଆ କୋଳରେ ମୁଣ୍ଡ ଗୁଂଜି ଦେଇଥିଲେ । ବାପା କୋଳରେ ପଶିଯାଇଥିଲା ତା' ପୁଅଟି । ପୁଣି ସନିଆ ଫେରିଯାଇଥିଲା ତା' ଭାବନା ରାଜ୍ୟକୁ ।

ସାନଭାଇର ବିଭାଘର କରିଥିଲା । ନିଜ ଶୋଇବା ବଖରାଟିକୁ ଛାଡି ଦେଇଥିଲା ସାନଭାଇ ପାଇଁ । ମଝିଆଁ ଭାଇ ଏମାନଙ୍କଠାରୁ ଅଲଗା ହୋଇଯାଇଥିଲା । ପିଲାଛୁଆଙ୍କୁ ଧରି ସନିଆ ବାହାରିଥିଲା ସହର ଅଭିମୁଖେ । ସେ ନିଷ୍ପତ୍ତି ନେଇଥିଲା ହୁଏତ ସହରକୁ ଗଲେ କୋଉ ଅନାବାଦୀ ଜାଗାରେ ଘର ବଖରାଏ କରିବ, ଦୋକାନ ଖଣ୍ଡିଏ ଦେଇ ନିଜ ପିଲାଙ୍କର ଗୁଜୁରାଣ ମେଣ୍ଟାଇବ । ଆଉ ଏ ଗାଁ ସଂପତ୍ତି କି ଘରୁ କୌଣସିଥିରୁ ଭାଗ ନେବନି । ଘରୁ ବାହାରିଲାବେଳେ ସାନଭାଇ ବହୁତ ଅନୁନୟ ବିନୟ ହୋଇ କହିଥିଲା ରହିଯିବାପାଇଁ ଦୁଇଜଣ ମିଶି ଆଉ ବଖରାଏ ଘର ତୋଳିଦେବା ପାଇଁ । ବାପା, ମାଆ ତା'ର ନଥିଲେ । ତେଣୁ ପଡିଶାଘର ଖୁଡ଼ୀ, ଦାଦା ବହୁତ ଅନୁନୟ ହୋଇ କହିଥିଲେ- 'ସନିଆ ତୁ କୁଆଡେ ବିଦେଶକୁ ପିଲାଗୁଡାଂକୁ ଧରି ଯିବୁ ? ଯାଆନା । ମୋ ବାପାଟା ପରା ଆମ କଥା ମାନିଯା । ଏଇଠି ଭାଇବଂଧୁ କୁଟୁମ୍ବଙ୍କ ସଙ୍ଗେ ରହିଯା ।' ସନିଆ କାହାକଥା

ଶୁଣିନଥିଲା । ସମସ୍ତେ ତାକୁ ଖୁବ୍ ସ୍ୱାର୍ଥପର ମନେ ହୋଉଥିଲେ । ସେ ଚାଲିଥିଲା; ଯେଉଁ ଆଡକୁ ତା' ଆଖି ଟାଣି ନେଉଥିଲା ସେ ଆଡକୁ । କିଛିବାଟ ଯିବାପରେ ବସ୍ ଧରି ସହରରେ ପହଂଚିଥିଲା ।

ଏତେ ବଡ ସହର, ଏତେ ଚକ୍‌ମକ । ଯୁଆଡେ ଚାହିଁବ କୋଠା ମାଳମାଳ । ଏ ସହର ସତରେ କ'ଣ ତାକୁ ଆପଣାର କରିପାରିବ ! ନା ସେ ନିଜେ ଆପଣେଇ ନେଇପାରିବ ଏଇ ଯାକଯମକଭରା ସହରକୁ ? ଏମିତି ଭାବି ଭାବି ବାଟ ଚାଲୁ ଚାଲୁ ସେ କେତେବେଳେ ପିଲାଛୁଆଙ୍କ ସମେତ ପହଂଚିଯାଇଥିଲା ସ୍କୁଲ୍ ପାଖରେ । ସ୍କୁଲଟି ଛୁଟି ଥିଲା କି କ'ଣ । କେହି ଜଣେ ବି ନଥିଲେ ସ୍କୁଲରେ । ଜିନିଷପତ୍ର ସହ ସେ ଉଠିଗଲା ସ୍କୁଲ ବାରଣ୍ଡାକୁ । ଚାଲି ଚାଲି ଥକ୍‌କା ହୋଇ ପଡିଥିଲେ ସମସ୍ତେ । ସ୍ତ୍ରୀକୁ ନିର୍ଦ୍ଦେଶ ଦେଲା ସେହି ବାରଣ୍ଡା କୋଣରେ ଟିକିଏ ବସିଯିବା ପାଇଁ । ନିଷ୍ପତ୍ତି ନେଲା ଆଜି ରାତିକ ସେ ପୋହିଦେବ ଏଇଠି । ବରଂ କାଲିଠାରୁ କାମ ଖୋଜିବ କି ଘର ଖୋଜିବ, ଯାହାହେଲେ କରିବ । ପିଲା ତିନୋଟି ଭୋକରେ ଆଉଟୁ ପାଉଟୁ ହୋଇଯାଉଥିଲେ । ମା'କୁ ବ୍ୟସ୍ତ କରୁଥିଲେ ଖାଇବାକୁ ଦେବାପାଇଁ । ତା' ସ୍ତ୍ରୀ ତା'ପୁଅର ଗୋଟିଏ ସାର୍ଟରେ ବାନ୍ଧି ଆଣିଥିଲା କିଛି ଚୁଡ଼ା ଓ ଗୁଡ଼ । ଗଣ୍ଠିଲି ଖୋଲି ଚୁଡ଼ା ଗୁଡ଼ ଖାଇଲେ ସମସ୍ତେ । ନିକଟରେ ଥିବା ନଳକୂଅରୁ ପାଣି ପିଇଦେଲା ପରେ ଖୁବ୍ ନିଦ ମାଡୁଥିଲା । କ୍ଲାନ୍ତିର ନିଦ ।

ପାଖରେ ଥିବା ବରଗଛର କଟମଟ ସ୍ୱରରେ ସନିଆ ଫେରିଆସିଥିଲା ଭାବନା ରାଜ୍ୟରୁ । କୋଉ ପୁରୁଣାକାଳର ବରଗଛ । କେତେ ଚଢ଼େଇ କାଉଙ୍କର ବାସସ୍ଥଳୀ । କେତେ ବାଟୋଇଙ୍କର ବସ୍‌କୁ ଅପେକ୍ଷା କରିବାର ସ୍ଥାନ ଏଇ ବରଗଛ ଚାନ୍ଦିନୀ । ଥକ୍‌କାମରା ବାଟୋଇ ବି ଏଇ ଗଛତଳେ କାନି ପାତି ଶୋଇ ପଡନ୍ତି ଏଇ ବରଗଛ ତଳେ । ତା'ର ଭୟ ହେଲା ଏଇ ବରଗଛ ଆଉ ଭାଙ୍ଗିପଡିବନି ତ ! କିନ୍ତୁ ବାହାରିବାର ଉପାୟ ନଥିଲା । କାରଣ ବାହାରେ ଝଡ଼ ଓ ବର୍ଷାର ପ୍ରଳୟ ତାଣ୍ଡବ । ଭୟରେ ତା'ର ଛାତି ଥରି ଉଠୁଥିଲା । ପୁଅକୁ ଆହୁରି କୋଳକୁ ଭିଡି ଆଣି ସେ ଜଡାଇ ଧରିଥିଲା । ଚାହିଁଥିଲା ସ୍ତ୍ରୀ ଓ ଝିଅମାନଙ୍କ ମୁହଁକୁ । ଆଖିରେ ଦେଖିପାରୁଥିଲା ଆତଙ୍କର ଚିହ୍ନ । କିନ୍ତୁ ନିରୁପାୟ । ଏ ଘୋର ଅନ୍ଧାର ରାତିରେ କୌଣସି ଉପାୟ ଖୋଜି ପାଉନଥିଲା । ଛାତିର ସ୍ପନ୍ଦନ ବଢ଼ି ବଢ଼ି ଯାଉଥିଲା ।

ଚୁଡା ଖାଇ ସମସ୍ତେ ଶୋଇଥିଲେ ବାରଣ୍ଡାରେ । ସକାଳୁ ଉଠିଲାବେଳକୁ ଦିନ ଆଲୁଅରେ ସବୁ ଫର୍ଚା ଦିଶୁଥିଲା । କ'ଣ କରିବ ବୋଲି ଭାବିବା ବେଳକୁ ସେ ଦେଖିଲା, ସ୍କୁଲକୁ ଜଣେ ସାର୍ ଆସୁଛନ୍ତି । ସକାଳୁଆ ସ୍କୁଲ୍ । ସ୍କୁଲର ହେଡ୍‌ମାଷ୍ଟର ବୋଧହୁଏ । ଏମାନଙ୍କୁ ଦେଖିଲେ । ଗୋଟି ଗୋଟି କରି ସବୁକଥା ତା'ଠାରୁ ଶୁଣିଲେ । କହିଲେ- ବ୍ୟସ୍ତ ହୁଅ ନାହିଁ । ଏଇ ସ୍କୁଲ୍‌ର ଗୋଟିଏ ଅଧାଭଙ୍ଗା ଘରେ ରହିଥାଅ । ନିକଟରେ ଥିବା ଛକରେ ଗୋଟିଏ ବରଗଛ ଅଛି । ସେଇଠି ଟିକିଏ ଜାଗା ଖାଲିପଡିଛି । ଝାଟିମାଟିର ଘରଟିଏ

ତୋଳିବାକୁ ଟଙ୍କା ଦେବି ମୁଁ । ତା' ଜଳଖିଆ ଦୋକାନଟିଏ ଦେଇ ପରିବାର ଚଳେଇ ମୋ ଟଙ୍କା ପରେ ଶୁଝି ଦେବ ।

ସାକ୍ଷାତ ଦୟାର ଅବତାର ସେ ଧଡ଼ୁସାର୍ । ସନିଆ ନିଜେ ନିଜେ ଘର ତୋଳିବା ଆରମ୍ଭ କଲା । ଝାଟିମାଟି ଓ ଢ଼ିମା ପଥରର ଘର । ସହଯୋଗ କଲେ ତା'ର ସ୍ତ୍ରୀ ଓ ପିଲାମାନେ । ସ୍ତ୍ରୀ ତା'ର ମାଟି ଚକଟି ବଢ଼େଇ ଦିଏ । ପିଲାମାନେ ଛୋଟ ଛୋଟ ପିଣ୍ଡୁଳା କରି ବଢ଼େଇ ଦିଅନ୍ତି । ସନିଆ କାନ୍ଥ ଉପରକୁ ଥୋଇଦିଏ । ଏମିତି କରି ସେ ଝାଟିମାଟିର ଚାଳିଆଟିଏ ଗଢେଇ ଦେଇଥିଲା । ଆଗପଟକୁ ଗୋଟିଏ ଅଧାଘର ବଢ଼େଇ ଦେଇଥିଲା । ଆଗପଟରେ ତା'ଦୋକାନ କଲା । ପଛପଟ ବଖରାଟିରେ ରହିଲେ ତା'ର ପିଲାମାନେ । ଧଡ଼ୁସାର୍ ପିଲାମାନଙ୍କର ଭଲମନ୍ଦ ଦେଖାଶୁଣା କରନ୍ତି ମଝିରେ ମଝିରେ । ତା' ଦୋକାନଟି ଖୁବ୍ ଭଲ ଚାଲିଲା । ଧଡ଼ୁ ସାର୍‌ଙ୍କ ପଇସା ସନିଆ ଶୁଝି ଆସୁଥିଲା ଆସ୍ତେ ଆସ୍ତେ । ଭାବୁଥିଲା ଧଡ଼ୁସାରଙ୍କର ସବୁ ପଇସା ଶୁଝି ସାରିଲେ ଦୋକାନକୁ ଭଲକରି ବାଗେଇବ । ଘରଟାକୁ ଭଲକରି ବାଗେଇବ । ସ୍ତ୍ରୀ ଆଉ ପିଲାମାନଙ୍କ ପାଇଁ ଭଲ ଲୁଗାପଟା ଓ ଘରକରଣା ଜିନିଷ କରିଦେବ । ପୁଅ ଝିଅମାନଙ୍କ ନାଁ ଲେଖେଇଦେଇଥିଲା ପାଖ ସ୍କୁଲରେ । ସାର୍ କହୁଥିଲେ- ଝିଅଟି ଭଲ ପଢୁଛି, ପୁଅଟି ବି ବଡ଼ହେଲେ ଭଲ ପଢ଼ିବ । ସେଥିପାଇଁ ସାର୍ ବହିପତ୍ର ଇତ୍ୟାଦି ଯୋଗାଇ ଦିଅନ୍ତି । ସେ ଯାହାହେଉ ପଇସାପତ୍ର ରଖି ପୁଅଝିଅଙ୍କୁ ଭଲରେ ପାଠ ପଢ଼େଇବ । ହେଲେ ଏ ଝଡ଼ କମିଲେ ତ । ଠିକ୍ ଏତିକି ବେଳେ ସ୍ତ୍ରୀ ତାକୁ ହଲେଇ ଦେଇ କହିଲା- ଶୁଣୁଛ ! ବାହାରେ କ'ଣ ଖୁବ୍ ଜୋର୍‌ରେ ବିକଟାଳ ଶବ୍ଦ ଶୁଭୁଛି । ଧଡ଼ୁ ସାର୍ ଏତେ ଡାକିଲେ ତାଙ୍କ ଘରକୁ ଯିବାକୁ, ଗଲନି । ଧଡ଼ୁ ସାର୍‌ଙ୍କର ପୁଅଝିଅ ପାଖରେ ରହନ୍ତିନି ବୋଲି ସେ ଭାରି ଆଦର କରନ୍ତି ଆମ ପିଲାଙ୍କୁ । ଏତେବଡ଼ ଗଛଟା ଯଦି ଉପୁଡ଼ି ପଡ଼ିବ କି ଭାଙ୍ଗିଯିବ କ'ଣ ହେବ ଆମର ଅବସ୍ଥା ? ଚାଲ ଏ ଘର ଛାଡ଼ି ପଳେଇବା । ତା' ପାଟିରୁ କଥା ନସରୁଣୁ ଉପୁଡ଼ି ପଡ଼ିଥିଲା କାୟା ବିସ୍ତାର କରିଥିବା ସେ ବରଗଛଟି । ଗଛର ମୋଟା ମୋଟା ଚେରଗୁଡ଼ା ଉର୍ଦ୍ଧ୍ୱମୁଖୀ ହୋଇ ପଡ଼ିଥିଲେ ! ସତରେ ଯେମିତି ଝଡ଼ ସହିତ ନିୟତ ସଂଗ୍ରାମ କରି ପରାଜିତ ସୈନିକ ପରି ଆପଣେଇ ନେଇଥିଲା ସେ ମାଟି ମାଆକୁ ଓ ସନିଆର ଝାଟିମାଟି ଚାଳକୁ । ସବୁ ସ୍ୱପ୍ନ ତା'ର କବର ପାଇ ଯାଇଥିଲା । ଘର ତା'ର ଚୁରମାର୍ ହୋଇଯାଇଥିଲା । ସକାଳୁ ଧଡ଼ୁସାର ବ୍ୟସ୍ତ ବିବ୍ରତ ହୋଇ ଆସିଥିଲେ ସନିଆ ଓ ପିଲାମାନଙ୍କର ଅବସ୍ଥା ଦେଖିବା ପାଇଁ । ଲୋକ ଗଦା ହୋଇଥିଲେ । ପାଞ୍ଚୋଟି ଆତ୍ମା ସମାଧି ନେଇଥିଲେ ଘରର କାନ୍ଥ ତଳେ । ଉଜୁଡ଼ି ଯାଇଥିଲା ସ୍ୱପ୍ନର ଘର ।

ସନିଆ ଘରଟିଏ ତୋଳି ସାରିଥିଲା ସେପାରିରେ । ✺

✠ ନୂଆଘର, ୫୧-ରାମଚନ୍ଦ୍ରପୁର, ଜଟଣୀ, ଖୋର୍ଦ୍ଧା-୭୫୨୦୫୦

ଜୟଶ୍ରୀ ପଟ୍ଟନାୟକ

# ଅଜଣା ଆତଙ୍କ

ଅକ୍ଟୋବର ୨୮ ତାରିଖ । ଅଫିସ କାମ ସାରି ପାଇଥିବା ବୋନସ୍ ପଇସାକୁ ସାଙ୍ଗରେ ନେଇ, ମନ ଖୁସିରେ କେତେ କଣ କିଣି ପକାଇଲା ମିତାଲୀ । କ୍ୱାର୍ଟରରେ ତାଲା ଦେଇ ସଅଳ ଉଠି ଯାଇଥିଲା ଟ୍ରେନକୁ, ଘରକୁ ଯିବାପାଇଁ । ରାସ୍ତା ସାରା ଭାବୁଥିଲା ଘରେ ପହଞ୍ଚି ସମସ୍ତଙ୍କୁ ନୂଆ ଲୁଗାପଟା ଦେବ । ବୋଉକୁ ବଉଳପାଟ ଭାରି ପସନ୍ଦ ବୋଲି ପାଟଟିଏ କିଣିଥିଲା । ପାଣିପାଗ ସୂଚନାରୁ ଶୁଣିଥିଲା ପ୍ରବଳ ସାମୁଦ୍ରିକ ଝଡ ଆସିବ । ପାରାଦ୍ୱୀପଠାରେ ଖଣ୍ଡ ପ୍ରଳୟ ସୃଷ୍ଟି କରିବ । ୨୫୦ କି.ମି ବେଗରେ ପବନ ବୋହିବ । ଆଖପାଖ ୫୦୦ କି.ମି ବ୍ୟାସାର୍ଦ୍ଧରେ ଥିବା ଗଛ, ପତ୍ର, ଘରଦ୍ୱାର ସବୁକୁ ଉଡେଇ ନେବ ସମୁଦ୍ରକୂଳିଆ ବାସିନ୍ଦାମାନଙ୍କୁ ଉଚ୍ଚ ସ୍ଥାନକୁ ଚାଲିଯିବା ପାଇଁ କୁହାଯାଇଛି । ମତ୍ସ୍ୟଜୀବୀମାନଙ୍କୁ ସମୁଦ୍ରକୁ ନ ଯିବା ପାଇଁ ସତର୍କ କରିଦିଆଯାଇଛି । କେମିତି ଗୋଟିଏ ଅଜଣା ଭୟରେ କମ୍ପି ଉଠୁଥିଲା ତା'ର ଶରୀର । କାରଣ ତାଙ୍କ ଘରଟା ସମୁଦ୍ର ପାଖାପାଖି ଅଞ୍ଚଳରେ । ବାପା ତା'ର କାମ କରନ୍ତି ପାରାଦ୍ୱୀପ ଫସ୍‌ଫେଟ୍ ଲିମିଟେଡରେ । ଘରେ ଆଉ ଦୁଇ ଜଣ ଭଉଣୀ, ଛୋଟ ଭାଇ ଓ ମା । ଯଦି ଏ ଝଡ଼ କିଛି ଅଘଟଣ ଘଟାଏ ସେ ସଂପୂର୍ଣ୍ଣରୂପେ ବିଚ୍ଛିନ୍ନ ହୋଇ ପଡିବ ସେମାନଙ୍କ ପାଖରୁ । ଆଉ କିଛି ଆଗକୁ ଭାବିପାରୁନଥିଲା । କେବଳ ଭଗବାନଙ୍କୁ ଡାକୁଥିଲା ।

ଗାଡି ପହଞ୍ଚିଲା କଟକ ଷ୍ଟେସନ୍‌ରେ । ତରବରରେ ଓହ୍ଲେଇ ପାରାଦ୍ୱୀପ ଯିବାପାଇଁ ବସ୍ ଖୋଜୁଥିଲା । ଏହି ସମୟରେ ସାଙ୍ଗ ଅନୁ ସହ ଦେଖା ହେଲା ।

- ମିତାଲୀ, କୁଆଡେ ଯାଉଛୁ ?

- ଘରକୁ ।

- ତୁ କ'ଣ ପାଗଳୀ ହେଲୁ ? ତୁ ଶୁଣିନାହୁଁ ଝଡ଼ ଆସିବା କଥା ? ଏଥିରେ ପାରାଦ୍ୱୀପ ଅଞ୍ଚଳର ଖୁବ୍ କ୍ଷତି ହେବ । ସେଥିପାଇଁ ସରକାର ସମୁଦ୍ରକୂଳରେ ଥିବା ଲୋକମାନଙ୍କୁ ଘର ଛାଡି ଚାଲିଯିବାକୁ କହିଛନ୍ତି । ଏ ରାତିରେ ଘରକୁ କାହିଁକି ଯିବୁ ? ଘରେ କେହି ନଥିବେ । ତମର ତ ସମୁଦ୍ରକୂଳରେ ଘର । ଚାଲ, ଆମ ଘରେ ରହିଯିବୁ ।

କିଛି ଭାବି ପାରୁନଥିଲା ମିତାଲୀ । କ'ଣ ସବୁ ଅନୁ କହିଯାଉଛି ? ସତରେ କ'ଣ ଭଗବାନ ତାଙ୍କ ପାରାଦ୍ୱୀପ ପାଇଁ ଏତେ ନିର୍ଦ୍ଦୟ ହେଇପଡିଛନ୍ତି ! ଭାରି ବିକଳ ଲାଗୁଥିଲା ତାକୁ । ଅବାଧ ଶିଶୁଟି ପରି ପରିବାରର ଲୋକମାନଙ୍କୁ ମନେପକେଇ କାନ୍ଦୁଥିଲା । ଅନୁର ବାପା ମା'ଙ୍କର ଅନୁରୋଧ କ୍ରମେ ମିତାଲୀ ସେ ରାତିଟା ତାଙ୍କ ଘରେ ରହିଗଲା ।

ପରଦିନ ସକାଳ । ଆଜି ସେଇ ପ୍ରଳୟର ଦିନ । ସମସ୍ତଙ୍କ ମନରେ କୋକୁଆ

ଭୟ, ସାମୁଦ୍ରିକ ଝଡ ଆସି କାହାର କ'ଣ କ୍ଷତି କରିବ । ପାଣିପାଗ ସୂଚନା ଶୁଣିବା ପାଇଁ ଭିଡ । କିଛି ସମୟ ପରେ ରେଡ଼ିଓରୁ ସମ୍ବାଦ ପ୍ରସାରଣ ବନ୍ଦ ହୋଇଗଲା । ଏହି ସମୟରେ ଫୋନ୍ ରିଂ ବାଜି ଉଠିଲା । ଅନୁର ଭାଇ ଫୋନ୍ କରିଛନ୍ତି ବ୍ରହ୍ମପୁର ରେଡ଼ିଓ ଷ୍ଟେସନ୍‌ରୁ । ପ୍ରବଳ ବେଗରେ ପବନ ବୋହିବ । କେହି ବାହାରକୁ ବାହାରିବନି । ଆଜବେଷ୍ଟସ୍ ଘର ଛାଡି ଛାତ ଘରକୁ ଚାଲିଯିବ । ତା'ପରେ ଫୋନ୍ ଡେଡ୍ । ଫୋନ୍ ରଖି ବାହାରକୁ ଦେଖିଲାମାତ୍ରେ ପବନର ବେଗ ସାଙ୍ଗକୁ ଝିପିଝିପି ବର୍ଷା । ପବନର ଘୁ-ଘୁ ଗର୍ଜନରେ ବାପ, ଜେଜେବାପ ଅମଳର ବିରାଟକାୟ ବରଗଛ, ଓସ୍ତଗଛ, ଲିମ୍ବ, ଆମ୍ବ, ପିଜୁଳି ସାଙ୍ଗକୁ କେତେ କିସମର ଗଛ ଧରାଶାୟୀ ହେଇପଡୁଥାନ୍ତି । ଲାଗୁଥିଲା ଯେମିତି ଆତସବାଜିର ମହୋତ୍ସବ ହେଉଛି । ପ୍ରକୃତି ଓ ବିଧାତାର ତାଣ୍ଡବଲୀଳାରେ ସନ୍ତ୍ରସ୍ତ ମଣିଷ, ପଶୁ ଆଉ ପକ୍ଷୀଙ୍କର ଜୀବନ । ବେଳରୁ ବେଳ ପବନର ବେଗ ପ୍ରବଳରୁ ପ୍ରବଳତର ହେଉଥାଏ । ଥମିବାର ପ୍ରଶ୍ନ ଉଠୁନାହିଁ । ମନେ ହେଉଥିଲା ସତେ ଯେମିତି ପବନ ଓ ବର୍ଷା ବଳ କଷାକଷି ହେଉଛନ୍ତି, କିଏ ଜିତିବ ଓ କିଏ ହାରିବ । ଗାଁ ଲୋକଙ୍କର ଆର୍ତ୍ତଚିତ୍କାରରେ ଫାଟି ପଡୁଥାଏ ଆକାଶ ।

ଏହି ସମୟରେ ଅନୁ ଘର ବାରି ଅଗଣାରେ ଥିବା ନଡିଆଗଛଟି ଦୁଲ୍‌କରି ପଡିଲା ଛାତ ଉପରେ । ସମସ୍ତେ ଇତଃସ୍ତତ ହୋଇ ଏ ଘରୁ ସେ ଘର ଦୌଡୁଥିଲେ । ସେତେବେଳେ ପାଣି ପଶିଲାଣି ଘରେ । ତଳେ ପାଣି, ଉପରେ ବର୍ଷା ଓ ପବନ । ଏପଟେ ଲୋକମାନଙ୍କର କିଳିକିଳା ରାବ । ଅତ୍ୟନ୍ତ ହୃଦୟ ବିଦାରକ ଥିଲା ସେ ଦୃଶ୍ୟ । ରାତିଟା ସାରା ନିଦ ନାହିଁ କାହା ଆଖିରେ । ସେ ରାତିରେ ଅଣ୍ଡାଳି ଅଣ୍ଡାଳି ବିସ୍କୁଟ ଡବାରୁ ଆଠ ଦଶଟା ବିସ୍କୁଟ ପାଇଲେ ଅନୁର ମା । ତାକୁ ବାଣ୍ଟିକୁଣ୍ଟି ଖାଇ ଅନ୍ଧାର ରାତିଟା କଟେଇଲେ । ସହରଟା ପାଲଟି ଯାଇଥିଲା ନିପଟ ମଫସଲ । ଯୋଗାଯୋଗ ବିଚ୍ଛିନ୍ନ ହୋଇ ସହରଟା ସଂପୂର୍ଣ୍ଣ ଅସହାୟ ହେଇପଡିଥିଲା । ଏମିତି ଝଡବର୍ଷା ସାଙ୍ଗକୁ ପାଣି ପଶିବା ଅନୁଭୂତି ତା' ଜୀବନରେ ବୋଧହୁଏ ଏଇ ପ୍ରଥମ ।

ପରଦିନ ସକାଳେ ରବିବାର । ଯଦିଚ ପବନ ଓ ବର୍ଷା ସେତେଟା ଥମି ନଥିଲା ତଥାପି ବାହାରକୁ ଅନେଇ ହେଉଥିଲା ଟିକେ । ଅପରାହ୍ନକୁ ପୂରା ଥମିଗଲା ଝଡ ଓ ବର୍ଷା । ଲୋକମାନେ ଏଣେତେଣେ ପାଣି ଭିତରେ ସରସର ହେଇ ଗୋଟାଇ ପକାଉଥାନ୍ତି ଉଡିଯାଇଥିବା ଆଜବେଷ୍ଟସ୍ ଖଣ୍ଡ, ସାଇନ୍‌ବୋର୍ଡ ଆହୁରି କେତେ ଜିନିଷ । ଯାହାର ଘର ଭାଙ୍ଗିଯାଇଛି ଓ ଉଡିଯାଇଛି ତା'ର ଦୁଃଖ ଶୁଣିବାକୁ କେହି ନାହାଁନ୍ତି ।

ପରଦିନ ସକାଳେ ମାରୱାଡି ସ୍ୱେଚ୍ଛାସେବୀ ଅନୁଷ୍ଠାନର ପିଲାମାନେ ରିଲିଫ୍ ଦେବାପାଇଁ ବାହାରି ଆସିଲେ । ଧନୀ, ଗରିବ ସମସ୍ତଙ୍କର ରିଲିଫ । ଖାଦ୍ୟ ପାଇଁ, କିରୋସିନି ପାଇଁ ଲମ୍ଫାଧାଡି । ସବୁରିଙ୍କ ମନରେ ବାତ୍ୟାର ଛନ୍‌କା । ସାରା ସହରଟା

ଛିନ୍ନବିଚ୍ଛିନ୍ନ ହୋଇ ପଡିଛି ବିଦ୍ୟୁତ୍‌ଖୁଣ୍ଟି, ଟେଲିଫୋନ ତାର ଓ ବିରାଟକାୟ ଗଛମାନଙ୍କ ଯୋଗୁ ।

ଅନୁର ଭାଇକୁ ସାଙ୍ଗରେ ନେଇ ପାରାଦ୍ୱୀପ ଯିବାପାଇଁ ବାହାରିଲା ମିତାଲୀ । କେମିତି ଯିବ ଏ ବିପଦ ବେଳେ ! ଯିବାକୁ କ'ଣ ମିଳିବ ! ଯେଉଁଆଡେ ଦେଖିଲେ ଗୋରୁ, ଗାଈ, କୁକୁରଙ୍କ ମଲାଦେହ । ଠାଏ ଠାଏ ମଣିଷ ଶବ । ଯିବାପାଇଁ ରାସ୍ତା ନାହିଁ । ପାଦ ପାଦକେ ଗଛ । ସହରଟାର ବହୁ ସ୍ଥାନ ପାଣିରେ ବୁଡି ରହିଛି । ଫୋନ ବି ନାହିଁ କିଛି ଖବର ବୁଝିବାକୁ । ଗାଡିମଟର ଚାଲୁନାହିଁ । ଛନ୍‌କା ପଶିଗଲା ମିତାଲୀ ମନରେ । କଟକରେ ତ ଏମିତି । ପାରାଦ୍ୱୀପରେ କ'ଣ ନ ହୋଇଥିବ ! ଯେତେ ପଇସା ନେଲେ ପଛେ ନିଅନ୍ତା କେହି ଜଣେ ପହଞ୍ଚେଇ ଦିଅନ୍ତା କି ଗାଁରେ ।

ପଡ଼ିଥିବା ଗଛଗୁଡ଼ିକର କଡ଼େ କଡ଼େ ପାଦଚଲା ରାସ୍ତାରେ କିଛି ବାଟ ଉଠିଗଲେ ସେମାନେ । ଆଗକୁ ଯାଉ ଯାଉ ଦେଖାହେଲା ପଡୋଶୀ ମାମୁଁଙ୍କ ସହ । ପିଲାବେଳୁ ଗୋଟିଏ ଖଞ୍ଜାରେ ରହୁଥିଲେ ବୋଲି ମିତାଲୀ ତାଙ୍କୁ ମାମୁଁ ଡାକୁଥିଲା । ଅତି ବ୍ୟାକୁଳ ହୋଇ ପଚାରୁଥିଲା ମିତାଲୀ ।

-ମୋତେ ଟିକେ ମୋ ଘରକଥା କୁହ ! କେମିତି ଅଛନ୍ତି ସବୁ ! କୁଆଡେ ଗଲେ ସେମାନେ !

କିଛି କହିବା ପୂର୍ବରୁ ଲୁହ ବୋହି ଆସୁଥିଲା ମାମୁଁଙ୍କର ଦୁଇ ଆଖିରୁ । ଯେମିତି କେତେଦିନରୁ ଜମାଟ ବାନ୍ଧି ରହିଥିଲା । ଡରିଗଲା ମିତାଲୀ । କ'ଣ ହେଇଛି ନିଶ୍ଚୟ, କିଛି ଗୋଟାଏ ଅଘଟଣ ଘଟିଛି । ନ ହେଲେ ମାମୁଁ, ଯିଏ ଚାରି ଚାରିଟା ଚୋରକୁ ସାହସ ବାନ୍ଧି ଘଉଡେଇ ଦେଉଥିଲେ ସେ ଆଜି ଏମିତି ଅସହାୟ ଭାବରେ କାନ୍ଦୁଛନ୍ତି କାହିଁକି !

ମାମୁଁଙ୍କୁ ହଲାଇଦେଲା ମିତାଲୀ ।

-କ'ଣ କହିବି ଲୋ ଝିଅ ? କେମିତି କହିବି ? ଭାଷା ପାଉନାହିଁ । ସବୁ ସରିଗଲା । ତୋ ପରିବାର ଆଉ ମୋ ପରିବାରର ଲୋକେ ସେଇ ଦ୍ୱିତୀୟ ଜୁଆର ଭିତରେ ଠେଲି ହେଇ ଚାଲିଗଲେ ସମୁଦ୍ର ଭିତରକୁ ମୋ ଆଖି ଆଗରେ । ଦୈବାତ୍ ମୁଁ ଗୋଟାଏ ବରଗଛର ଡାଳ ଧରିଲା ବେଳକୁ ଆଉଗୋଟିଏ ଗଛ ଉପୁଡି ତାକୁ ବି ମୋ ଠାରୁ ଛଡେଇ ନେଲା । ଏତେଦିନ ଯାଏଁ ମୁଁ କେବେ ଦେଖିନଥିଲି ଏମିତି ଝଡ ବାତ୍ୟା । ଜୀବନ ବିକଳରେ ଗୋଟିଏ ତିନି ମହଲା ଘର ଉପରକୁ ଚଢ଼ିଗଲି । ସାରା ସହରର ଘରଦ୍ୱାର, ଗାଈ ଗୋରୁ, ମଣିଷ ସବୁ ଯେମିତି ମିଶିଯାଉଥିଲେ ସମୁଦ୍ର ଗର୍ଭରେ । ଚାରିଆଡେ ଖାଲି ଶୂନ୍ୟ ଆଉ ଶୂନ୍ୟ । ଦୁଇ ମହଲା ଯାଏଁ ସମୁଦ୍ର ପାଣି । ତଳକୁ ଚାହିଁଲେ ଲାଗୁଥାଏ ଗୋଟାଏ ଦ୍ୱୀପରେ ଆମେ ରହିଛୁ । ଆଉ ସମସ୍ତେ ଆତ୍ମସମର୍ପଣର ଭଙ୍ଗୀରେ, ରକ୍ଷାକର ରକ୍ଷାକର ହୁରି ଛାଡିଥାନ୍ତି । ପ୍ରଥମ ଜୁଆର ବେଳକୁ ସମୁଦ୍ର କୂଳର ବସ୍ତି ନିଶ୍ଚିହ୍ନ ହୋଇପଡିଥିଲା । ଦ୍ୱିତୀୟ

ଢୁଆର ସାରା ସହରକୁ ଶ୍ମଶାନ ଭୂଇଁରେ ପରିଣତ କରିଦେଇଥିଲା । ବାଳି ଗରଡା ପରି ଭାସିଯାଉଥିଲେ ସବୁ ସମୁଦ୍ରକୋଳକୁ । ତୁ କ'ଣ ଦେଖିପାରିବୁ ପାରାଦ୍ୱୀପର ଅବସ୍ଥା ? ଶବ ବୁହା ଚାଲିଛି । ରାମନାମ ଡାକିବାକୁ କେହି ନାହିଁ । କାଠ ଗଦାରେ ଶବ ଲଦା ହୋଇଛି । ଲୁହ ତର୍ପଣ କରିବାକୁ କେହି ନାହିଁ । ମାଟି ଡିହର ଚିହ୍ନବର୍ଣ୍ଣ ନାହିଁ ।

ସେ ଅବ୍ୟକ୍ତ ବେଦନାର କଥା ଶୁଣିପାରୁନଥିଲା ମିତାଲୀ । ଧୀରେ ଧୀରେ ସଂଜ୍ଞାହୀନ ହେଇ ପଡିଥିଲା ସେଇଠି । ଏ ଦାରୁଣ, ଆର୍ତ୍ତନାଦର କାହାଣୀ ଶୁଣିବାପାଇଁ ସେ ଯେମିତି ଦୁଇଦିନ ଧରି ଅପେକ୍ଷା କରିଥିଲା ।

ସଂଜ୍ଞା ଫେରିଲାବେଳକୁ ନିଜକୁ ଆବିଷ୍କାର କଲା ଡାକ୍ତରଖାନାରେ । ଆଉ କିଛି କହିପାରୁନଥିଲା କି କାନ୍ଦି ବି ପାରୁନଥିଲା । ମାମୁଁ ବାରମ୍ବାର ସାନ୍ତ୍ୱନା ଦେଉଥିଲେ- ତୁ ଏବେ ଏକା ନୁହେଁ ଲୋ ଝିଅ, ମୁଁ ପରା ତୋର ବାପା । ଖାଲି ପାଗଳୀଙ୍କ ପରି ବ୍ୟାଗ ଭିତରୁ ବୋନସ୍ ପଇସାରେ କିଣି ଆଣିଥିବା ଲୁଗାପଟା ଓ ଦରମା ପଇସାକୁ ମିତାଲୀ ବାହାରକୁ କାଢୁଥିଲା ଓ ରଖୁଥିଲା । କ'ଣଗୁଡ଼ାଏ ମନକୁ ମନ କହୁଥିଲା ଓ କାନ୍ଦୁଥିଲା । ☀

ଌ ରାଜାବଜାର, ଜଟଣୀ - ୭୫୨୦୫୦

---

ଅନ୍ତର୍ଯ୍ୟାମୀ ପ୍ରଧାନ

# ଘୂର୍ଣ୍ଣି (୨)

ରାତି ପ୍ରାୟ ଗୋଟାଏ ହେବ । ତଥାପି ଅପେକ୍ଷା କରି ବସିଛି ବତାସୀ । ଜୀବନସାରା ଉପେକ୍ଷିତା ବତାସୀ ଆଜି କିନ୍ତୁ ଅପେକ୍ଷା କରିଛି । ଉପେକ୍ଷା ପାଇଁ ନୁହେଁ.... ଉପଭୋଗ ପାଇଁ ।

ସମୁଦ୍ର ଉପକୂଳବର୍ତ୍ତୀ ଅଂଚଳରେ ଘର ତା'ର । ବାଆ, ବତାସ, ଘୂର୍ଣ୍ଣି, ପବନ ସବୁ ତାର ଜୀବନର ଉପଭୋଗ୍ୟ । ସେଇ ବାଆ ବତାସବେଳେ ଜନ୍ମ ବୋଲି ତ ନାଁ ତାର ଦିଆଯାଇଥିଲା ବତାସୀ । ସେ ବି ବତାସକୁ ଡରେନି । ହେଲେ ଘୂର୍ଣ୍ଣି ? ଜୀବନରତୁର ଅଷ୍ଟାଦଶତମ ବୟସର ଘୂର୍ଣ୍ଣି ଘୂରେଇଦେଲା ତାକୁ; ଦୂରେଇ ଦେଲା ତା'ର ସ୍ୱପ୍ନ ଓ ସଂଭାବନାକୁ ।

ବାପାମାଆଙ୍କର ସେ ଥିଲା ପ୍ରଥମ ଝିଅ । ପ୍ରଥମ କେଇଟା ବର୍ଷ ଆଦର ସୋହାଗରେ କଟେଇଥିଲା । ମାତ୍ର ପୁତ୍ର ପ୍ରତୀକ୍ଷାରେ ତାର ଯେତେବେଳେ ସାତଟା ଭଉଣୀ ହେଲେ ସମସ୍ତେ ହୋଇ ଉଠିଲେ ଉପେକ୍ଷାର ଶିକାର । ତା' ବାପାଙ୍କର ଆର୍ଥିକ ଅବସ୍ଥା ଭଲ ନଥିଲା । ସେଥିରେ ପୁଣି ସାତଟା ଝିଅ । ବାପା କାହିଁ କେତେଦୂର ରାଇଜରେ ତା'ର

ବାହାଘର କରେଇଦେଲେ । ତୋଳାକନ୍ୟା କରି । ତା'ବରର ପ୍ରଥମପକ୍ଷ ଚାଲିଯାଇଥିଲେ ଦି'ଦିଇଟା ଝିଅକୁ ବି ଛାଡି । ତା'ର ବୁଢ଼ୀ ଶାଶୁ ନାତି ପାଇଁ ପୁଅକୁ ବାହା କରେଇଥିଲେ ଆଉଥରେ, ଯା'ର ବୟସ ଥିଲା ତା' ବୟସର ଦୁଇଗୁଣ । ହେଲେ ସବୁକୁ ଭାଗ୍ୟ କହି ଆଦରି ନେଇଥିଲା ସେ ।

ବତାସୀର ସ୍ୱାମୀ ସାଗର । ବିଶାଳ ବପୁ । ଜମିବାଡି ନଥିଲେ ବି ଶରୀରରେ ଥିଲା ଗୋଟାଏ ଅସୁରର ବଳ । ପାରାଦ୍ୱୀପ ବନ୍ଦରରେ କାମ କରୁଥିଲା, ଘର ଚଳଉଥିଲା । ଘର ବି ଚାଲିଥିଲା ଭଲରେ ଭଲରେ ବତାସୀ ବାହାଘରର ଦି ବର୍ଷଯାଏ । ଦି ବର୍ଷ ଯାଏ ବି ତା'ର କୋଳ ପୂରିଲାନି । ତହୁଁ ଆରମ୍ଭ ହେଲା ଶାଶୁ ପର୍ବ । ଟିକିଏ ଟିକିଏ କଥାରେ ଗାଳି, ଗାଳିରୁ କଳି । ପୁଅ ପାଖରେ ଅଭିଯୋଗ ଫର୍ଦ୍ଦ । ପୁରୁଷ ପୁଅ ଅଭିଯୋଗକୁ ବିଶ୍ୱାସ କଲା । ମାଡ ଗାଳି ଦେଲା । ଶେଷରେ ସେ ବି ଅତିଷ୍ଠ ହୋଇଉଠିଲା । ମଦ ପିଇଲା, ମାତାଲ ହେଲା । ତା'ର ପୁରୁଷ ପଣିଆ ବଦଳିଗଲା ଏଥର ।

ଗୁରୁଚାପ ପଡିଲା ବତାସୀର ଜୀବନରେ । ମାଆ ତା'ର ସାତଟା ଝିଅଙ୍କୁ ଜନ୍ମ ଦେଇ ଗାଳି ଖାଉଥିଲା । ଦି'ଟା ଝିଅ ପରେ ବି ପୁଅ ପାଇଁ ସ୍ୱାମୀ ତା'ର ଦ୍ୱିତୀୟ ବିବାହ ହେଲା । ଏବେ ସେ ନିଃସନ୍ତାନ ହେବାରୁ ମାଡ ଗାଳି ଖାଇଲା । ହେଲେ ଦୋଷ କାହାର ? କ'ଣ ମାଆ ଜାତିର ?? ଭାବେ ବତାସୀ । ଭାବେ ପୁଣି ବିଚିତ୍ର ପୁରୁଷ ଚରିତ୍ରକୁ । ମାଆର ଅଭିଯୋଗରେ ସାଗର ତାକୁ ଗାଳି କରେ, ମାରେ । ସତେ ଯେମିତି ସେ ତାକୁ ଘୃଣା କରେ । ହେଲେ ରାତିରେ... ରାତିରେ ତା'ର ଉଦ୍ଦମତା, ଔଦ୍ଧତ୍ୟ ବଢ଼େ । ସାଗର ବୁଝେନା ବତାସୀର ମନ ଆଉ ଶରୀରକୁ । ଆଗ୍ରହ ଓ ଅନାଗ୍ରହକୁ । ଗୋଟାଏ କଣ୍ଢେଇଭଳି ତାକୁ ନଚେଇବାକୁ ଚାହେଁ । ବେଳେବେଳେ ତା'ର ଇଙ୍ଗିତରେ ସେ ବସେ, ହସେ ନାଚେ । ହେଲେ ସବୁବେଳେ ପାରେନା ବତାସୀ । ଆଉ ଥରେ ଥରେ ଦିନର କଥା ମନେ ପଡିଲେ ତା'ର ଶରୀର ଶୀତଳ ହୋଇଯାଏ । ମାତ୍ର ସାଗର ଶୀତଳତାର ଅର୍ଥ ବୁଝେନା । ତା'ର ଉଦ୍ଦାମତାକୁ ପ୍ରଶମିତ କରିବାପାଇଁ ସେ ଖେଳି ଚାଲିଥାଏ, ସତେ ଯେମିତି ଗୋଟାଏ ଶବ ସହ । ଓଃ କି କଷ୍ଟ ! ଅତିଷ୍ଠ ହୋଇ ଉଠେ ବତାସୀ । ପେଟକୁ ଖଣ୍ଡେ ଦାନା ଆଉ ପିଠିକୁ ଖଣ୍ଡେ କନା ଦେଉଛନ୍ତି ବୋଲି ପୁରୁଷର ଏ କି ଏକଛତ୍ରବାଦୀ ! ଇଚ୍ଛାର ଅନିଚ୍ଛାରେ ଏ କ'ଣ ବ୍ୟଭିଚାର ନୁହେଁ ?

କଣ୍ଢେଇ ଭଳି ନାଚୁଥିଲା ବତାସୀ ସ୍ୱାମୀ ଓ ଶାଶୁଙ୍କର ଇଚ୍ଛାରେ । ହେଲେ ସେଦିନ ଘୂର୍ଣ୍ଣି ନଚେଇଦେଲା ସମସ୍ତଙ୍କୁ । ଶୁକ୍ରବାର ରାତିରେ କଳ୍ପନାଠାରୁ ଅନେକ ଭୟଙ୍କର ଓ ଉଗ୍ରରୂପ ଧରି ଏକାକାର କରିଦେଲା ଏ ସୁନ୍ଦର ସୃଷ୍ଟିକୁ । ସମୁଦ୍ରର ଲୁଣି ଜଳ ଲହ ଲହ ଜିଭ କାଢ଼ି, ଦୀର୍ଘଶ୍ୱାସର ଅଣଚାଶ ପବନ ବୁହାଇ, ସୀମା ଅତିକ୍ରମ କରି ମାଡି ଆସିଲା କୂଳକୁ । କୂଳ ନୁହେଁ ତ ସମଗ୍ର ସ୍ଥଳ ସାମ୍ରାଜ୍ୟକୁ । ତା' କବଳରୁ ତ୍ରାହି ପାଇବାପାଇଁ ଯିଏ

ଯେଉଁଠିକି ଧାଇଁଲେ । ହେଲେ ଘୂର୍ଣ୍ଣି ତା' କ୍ରୋଧକୁ ସହସ୍ରଗୁଣ ବଢ଼ାଇ ଗୋଡାଇଲା । ହରେଇ ଦେଲା ପ୍ରକୃତିକୁ ଉପହାସ କରୁଥିବା ମଣିଷକୁ; ପ୍ରକୃତିର (ଉପ) ସଂହାର କରୁଥିବା ମଣିଷକୁ । ସେଥିରୁ କେମନ୍ତେ ବାଦ୍ ପଡିଥାନ୍ତା ବତାସୀ ?

ବତାସୀ ସ୍ୱାମୀ ଓ ଶାଶୁଙ୍କ ସହ ଝିଅ ଦି'ଟାକୁ ଧରି ସ୍ଥାନୀୟ ଏକ କୋଠାକୁ ଦଉଡିଲା । ବାଟରେ ଢ଼େଉର ପ୍ରଥମ ଶିକାର ହେଲା ତା'ର ସାନଝିଅ । କୋଠାଘରେ ଚଢୁ ଚଢୁ ଠେଲାପେଲାରେ ତଳକୁ ଖସି ଢ଼େଉରେ ଭାସିଗଲେ ଶାଶୁ । ତିନିଜଣ ନିରାପଦ ଭାବି ସେଠାରେ ରହିଲେ ଭୋକ ଆଉ ବିପର୍ଯ୍ୟୟ ସହ ଲଢ଼େଇ କରି । ମାତ୍ର ଶନିବାରଦିନ ଅପରାହ୍ନରେ ଭୋକିଲା ଝିଅ ତୁଣ୍ଡରେ ଦାନାଟିକେ ଦବା ପାଇଁ ବାହାରକୁ ଯାଇ ଆଉ ଫେରିଲାନି ସ୍ୱାମୀ ତା'ର । ରବିବାରଦିନ ତାକୁ ଏକାକୀ କରି ଚାଲିଗଲା ବଡ ଝିଅଟି । ଘୂର୍ଣ୍ଣି ତା'ର ସଂସାର ଚୂର୍ଣ୍ଣ କରିଦେଇ, ପୂର୍ଣ୍ଣ କରିଗଲା ତା'ର ମନସ୍କାମନା ।

ଅନ୍ୟମନସ୍କ ହୋଇପଡିଛି ବତାସୀ । ପାଞ୍ଚଦିନ ଯାଏ ଖାଇନି । ଖୋଜୁଛି ତା' ଜୀବନର ଆଶ୍ରାକୁ, ସାଗରକୁ । ଇହକାଳ ଓ ପରକାଳର ଦେବତାକୁ । ହେଲେ ନିରାଶ ହେଲା । ଖାଦ୍ୟ ବିନା ଅତିଶୟ ଦୁର୍ବଳ ହୋଇପଡିଲା । ଦୁର୍ବଳା ବତାସୀ ଲୋଡୁଥିଲା ନିରାପଦ ଆଶ୍ରୟଟିଏ -ବଂଚିବାକୁ । ଯନ୍ତ୍ରଣା ଜର୍ଜରିତ ଜୀବନର ବି ହାରିବାର ଇଚ୍ଛା ନଥାଏ !

ବାସ୍, ବତାସୀକୁ ଜୁଟିଗଲା ଆଶ୍ରୟଟିଏ । ସେବା ସଂଗଠନର ମୁଖ୍ୟ ନିରାନନ୍ଦଙ୍କର । ନିରାନନ୍ଦଙ୍କ ସେବାରେ ସେ ସୁସ୍ଥ ହୋଇ ଉଠିଲା, ଦିନ ଆଠଟାରେ । ତା'ଜୀବନରେ ଆନନ୍ଦର ଫୁଆରା ସତେ ଯେପରି ଫେରିଆସୁଛି । ସେ ହେଲା ସେ ସଂଗଠନର ଅନ୍ୟତମ ସଭ୍ୟ । ସଭ୍ୟତାର ସନ୍ନିଧାନରେ ସଂପର୍କର ଅପସଂସ୍କୃତି ଗଢ଼ି ଉଠେ, ବେଳେବେଳେ । ତାହାହିଁ ହେଲା । ଘୂର୍ଣ୍ଣିରେ ଜୀବନର ଅତୀତ ଭୁଲିବାକୁ ଚାହୁଁଥିଲା ବତାସୀ । ସେ ଆସିଲା ରାଜଧାନୀକୁ ଜୀବିକାର ଅନ୍ବେଷଣରେ, ନିରାନନ୍ଦଙ୍କ ସହାୟତାରେ । ସେ କ'ଣ ଜାଣିଥିଲା ରାଜଧାନୀ ହେଉଛି ରହସ୍ୟର ଖଣି, ରାଜନୀତିର କାଉଁରିମୁଣି । ଏଠାରେ ସେବାର ନିରାନନ୍ଦମାନେ ଉପଭୋଗ ସାମ୍ରାଜ୍ୟର ସମ୍ରାଟ ବୋଲି । ତା'ଭଳି ନୀରିହ ଅଭିମନ୍ୟୁମାନେ ସେ ଚକ୍ରବ୍ୟୁହରୁ କ'ଣ ନିସ୍ତରି ପାରିଛନ୍ତି କେବେ ?

ଘୂର୍ଣ୍ଣିପରଠୁ ରାଜଧାନୀରେ ରହଣି ଯାଏ ତା'ପାଇଁ ଖର୍ଚ୍ଚ ହୋଇଥିବା ଅର୍ଥର ସୁଧମୂଳ ତା'ଠୁ ଆଦାୟ କରାଗଲା ବିଚିତ୍ର ଭାବରେ । ତା' ଶରୀରକୁ ସୌଦା କରାଗଲା । ଶରୀରର ସୌଦାଗରମାନେ ତାକୁ ଲୁଣ୍ଠନ କରିବାକୁ ଲାଗିଲେ । ଲୁଣ୍ଠନରେ ଅତିଷ୍ଠ ହୋଇ ଯୌବନର ବହ୍ନିରେ ସେମାନଙ୍କୁ ଜାଳିବାକୁ ସେ ଶପଥ ନେଲା । ଅଭିଜ୍ଞତାକୁ ପାଥେୟ କରି ସେ ରଚିଲା ତା' ଜୀବନର ଅନ୍ତିମ ଘୂର୍ଣ୍ଣି ! ରୂପର ବିପଣୀ !



ରାଜଧାନୀରେ ସେ ପାଇଲା ଏକ ନୂଆ ତଥ୍ୟର ସଂଧାନ । ତୁମର ଶ୍ରେଷ୍ଠ

ସଂପତ୍ତି ତୁମର ଶରୀର, ସୌନ୍ଦର୍ଯ୍ୟ । ତା'ର ସଦ୍‌ବ୍ୟବହାର କରି, ପୁରୁଷ ପ୍ରଧାନ ସମାଜକୁ ମେଣ୍ଢା କରି ତୁମର କ୍ରୀଡ଼ନକ କର । ପେଟକୁ ଗଣ୍ଡାଏ ଦାନା ପିଠିକୁ ଖଣ୍ଡେ କନା ପାଇଁ ସ୍ୱାମୀର ଇଚ୍ଛାକୁ ଅତ୍ୟାଚାର, ବ୍ୟଭିଚାର ଭାବୁଥିଲା ବତାସୀ ଏବେ ସେ ସବୁକୁ ଉପେକ୍ଷା କରି ଅପେକ୍ଷା କରିଛି ଆଉ ଜଣେ ନୂଆ ଆଗନ୍ତୁକକୁ । ଅପେକ୍ଷା କରିଛି ପ୍ରାଚୁର୍ଯ୍ୟର ପାହାଚ ଚଢ଼ି ପ୍ରତିଶୋଧର ବହ୍ନି ଜାଳିବାକୁ ଏ ସମାଜରେ; ବଂଚିବାର ଘୂର୍ଣ୍ଣି ବୁହାଇଦେବାକୁ ଆଉ ଏକ ନୂତନ ସକାଳକୁ .....। ☀

⌘ ୫୧, ରାମଚନ୍ଦ୍ରପୁର, ଜଟଣୀ, ଖୋର୍ଦ୍ଧା - ୭୫୨୦୫୦

---

ବିନୋଦିନୀ ନାୟକ

# ଥାଆନ୍ତା ଯଦି ମୋର ବିହଙ୍ଗ ପକ୍ଷ

''ଥାଆନ୍ତା ଯଦି ମୋର ବିହଙ୍ଗ ପକ୍ଷ, ଲଙ୍ଘି ଭୀଷଣ ଗିରି ସାଗର ବକ୍ଷ
ଦେଖନ୍ତି ପ୍ରିୟଜନ ମୁଖ କମଳ, ହୁଅନ୍ତା ସନ୍ତାପିତ ପ୍ରାଣ ଶୀତଳ ।''

ଦାଣ୍ଡ ଦୁଆରେ ବ୍ରିଟିଶ୍ ଅମଳର ଲମ୍ବା ହାତ ଆରାମ୍ ଚୌକିଟା ଉପରେ ବସି ନାରୁ ମିଶ୍ରେ ଦେଖୁଥାନ୍ତି ଡେଙ୍ଗାଗୋଡିଆ ଲମ୍ବା ବେକ ବିଶିଷ୍ଟ ବଗ, ବାରମାସୀ ଚଢ଼େଇ ଆଉ ହଳଦୀବସନ୍ତ ଏ ଗଛରୁ ସେ ଗଛର ଡାଳକୁ ଉଡୁଛନ୍ତି । ପକ୍ଷୀର ଫଡ୍‌ଫଡ୍ ଶବ୍ଦ ନାରୁ ମିଶ୍ରଙ୍କ ଅକ୍ଷମତାକୁ ଅଟ୍ଟହାସ୍ୟ କରୁଥାଏ । ବୋଧେ କବି ଉଇଲିଅମ କାଉପର୍ ଏ କବିତା ଲେଖିବାବେଳେ ତାଙ୍କୁ ବାର୍ଦ୍ଧକ୍ୟ ସ୍ପର୍ଶ କରିନଥିଲା । ତାଙ୍କର ଆଜି ଏ ଅଥର୍ବପଣିଆକୁ ସେ ନିଜେ ହିଁ ପରିହାସ କରୁଛନ୍ତି । ଅନବରତ ଏକଡ ସେକଡ ବୁଲି ଦାଣ୍ଡ ବାରି କୋଠା ବିଲ ସବୁକୁ ନିଜ ହାତରେ ମନ୍ଦିର କରି ଗଢ଼ି ତୋଳି ଥିଲେ ସେ । ବସି ବସି ସୁସ୍ୱାଦୁ ବ୍ୟଞ୍ଜନ ଗ୍ରାସ କରିବାର ଅଭ୍ୟାସଟାକୁ ସହଜେ ଆପଣେଇ ପାରୁନାହାନ୍ତି ସେ କି ଟିକି ଟିକି ବାଲିଗରଡ଼ାର ସୌଧଟାକୁ ନିଶ୍ଚିତ ଢ଼େଉର ଆକ୍ରମଣରୁ ରକ୍ଷା କରିବାକୁ ଯାଇ ପୁଣି ଟିକେ ବାଲି ନେସି ସଜାଡି ଦେବାକୁ ହାତ ଗୋଡର ସ୍ୱୀକୃତି ଟିକକ ପାଉନାହାନ୍ତି । ମନଟା ଗୋଳେଇ ଘାଣ୍ଟି ହେଉଛି । ଥାଆନ୍ତା କି ରୁନି ବୋଉଟା ପାଖରେ ! କହନ୍ତେ- ହେ, ଟିକେ କଖାରୁ ଗଛଟାକୁ ରଞ୍ଜା ଦେଇ ଚାଳ ଉପରକୁ ଟେକି ଦେ । ଟିକେ କଳରା ମୂଳରେ ମନ୍ଦା କରି ପାଣି ଦେ । ଛଚିନ୍ଦ୍ରା କଷି ଅଗରେ ଗୋଡିଟା ବାନ୍ଧି ଦେ । ସେ ଲଙ୍କା ଗଛଟା ଝାଉଁଳି ପଡିଛି, ତାକୁ ଟିକେ ମସଲା ଦେଇ ଠିଆ କର ନ ହେଲେ ମୋ ପିଲା କ'ଣ ଏ ମହରଗ ଯୁଗରେ କିଣି ଖାଇପାରିବେ ! ମାଳିଆକୁ ଡାକି ସେ ବାରିପଟ ଘରଟାକୁ ଛାଉଣୀ କର, ମୋ ପୁଅଝିଅ ନାତି ବସା ଉଠା କରିବେ । ଏମିତି କେତେ କ'ଣ... । ଯଦି ଆଜି ଥାଆନ୍ତା ତାଙ୍କୁ

ବୋଧେ ମୁହଁ ଫିଟାଇ କହିବାକୁ ପଡ଼ନ୍ତାନି । ଆଜି ଚିତଉ କି କାଲି ମଣ୍ଡା କରି ଖୁଆଇବାକୁ । ତାଙ୍କ ଡାକିବା ଠାଣିରୁ ସେ ବୁଝିପାରନ୍ତା ମନକଥା । ବୁଝାଇ କହନ୍ତା- ଖାଅମ, ବଅସ ହେଲେ ରୋଗ ବଇରାଗ ହବ ବୋଲି କ'ଣ ମଣିଷ ଭଲ ମନ୍ଦ ଦି'ଟା ଖାଇବନି ! ଯେମିତି ହେଲେ ତ ମରିବା । ହେଲେ ସିଏ ତା କଥା ସତ କରି ତାଙ୍କ ବିନା ଅନୁମତିରେ ଚାଲିଗଲା ଆରପାରିକୁ । ଏଇ ଥରକ ଜୀବନରେ ସେ ତାଙ୍କର ଅମାନିଆ ହେଲା । ଆଉ ଏ ପୁଅ ବୋହୂ ନାତି ନାତୁଣୀ ଯିଏ ଯାହା କାମରେ ବ୍ୟସ୍ତ । ଚାକିରୀଆ ବୋହୂଟା ଯେ ତା କାମରୁ ଫେରି ଛୁଆ ଦି'ଟା ଓ ତାଙ୍କପରି ଗୋଟେ ବୁଢ଼ାପୁଅଙ୍କ ଅଳି ଅର୍ଦ୍ଦଳି ବୁଝି ନୟାନ୍ତ । ନିଜେ ଗଣ୍ଡେ ଭଲରେ ଖାଇପାରେନା । ସିଏ ବା କେତେବେଳେ ଜଗିବ ତାଙ୍କର ଏ କୁଟାଖିଅର ଜୀବନକୁ । ତାଙ୍କ ଝାଳର ପ୍ରତିରୂପ ଓ ରକତର ଛାପ ଏ ବଗିତାକୁ ! ତାକୁ ଦୋଷ ଦେଇ ବା ଲାଭ କ'ଣ ?

ସେଦିନ କେତେ ପୁରୁଣା ହେଲାଣି । ରୁନି ବୋଉ ପାଠ ଦି'ଅକ୍ଷର ପଢ଼ି ନଥିଲା ବୋଲି ସେ ଚାକିରୀ ଜାଗାରୁ ଦେଇଥିବା ଚିଠି ପଢ଼ିନପାରି ସାଇତି ରଖିଥିଲା ତାଙ୍କ ଫେରିବା ଦିନକୁ । ସେଇଥିପାଇଁ ତ ସେ ଖୋଜି ଖୋଜି ଚାକିରୀଆ ପାଠୁଆ ବୋହୂ କରିଛନ୍ତି । ଯଦି ଜଣେ ସାମାଜିକ ଦାୟିତ୍ୱ ନେବାକୁ ଚାହୁଁଛି, ନେଉ ଦଶ ଜଣ ମରଦଙ୍କ ଭିତରେ ଜଣେ ବୋଲି ତ ଗଣା ହେବ ! ସିଏ ତ ଆଉ ଶାଶୁପରି ଭୋଅଟ ବେଳେ ପତି ଦେବତାର ନାଁ ପଚାରିଲେ ହାତେ ଲମ୍ବାର ଓଢ଼ଣା ତଳୁ ନୀରବରେ ନାଁ ନ କହି ଘରକୁ ଫେରିବନି ! ପୁଅର ଇସ୍କୁଲ୍‌ରେ ନାଁ ଲେଖା, ଘରର ଇଲେକ୍ଟ୍ରି ବିଲ୍ ଦେବା କାମ, ରେସନ୍ ଦୋକାନରୁ ମାସିକ ଚିନି ଗହମ ଆଣିବା କାମ, ତାଙ୍କ ପୁଅ ଚାକିରୀ ଜାଗାରୁ ଫେରିବା ଦିନ ଯାଏଁ ଅଟକି ରହିବନି । ଏସବୁ କରନ୍ତା କିଏ ? ନ ହେଲା ନାହିଁ ତାଙ୍କ କଖାରୁ ରଞ୍ଜା, ଲଙ୍କା ତଳି ରୁଆ, କଣ ହେଲା ସେଇଠୁ ? ସେ ତ ଅଥର୍ବ, ଅଧା ସରୀସୃପଟାଏ ଦୁଆର ଜଗିଛନ୍ତି ଆଉ କେହି ପଶି କ'ଣ ନେଇଗଲେ ଦେଖୁଥିବେ ସିନା କିଛି କରିପାରିବାର ଜୁ ନାହିଁ ତାଙ୍କର ।

ଏମିତି ଭାବୁ ଭାବୁ ହଠାତ୍ ସମ୍ବାଦପତ୍ରର ପ୍ରଚ୍ଛଦ ପୃଷ୍ଠା ମଣ୍ଡନ କରିଥିବା ସମ୍ବାଦଟା ଦୃଷ୍ଟିଗୋଚର ହେଲା ନାରୁମିଶ୍ରଙ୍କର । ଚନ୍ଦକା ନିକଟସ୍ଥ ଧାନବିଲରେ ହାତୀଙ୍କର ତାଣ୍ଡବଲୀଳା, ପୁଲିସ୍‌ର କ୍ରିୟାନୁଷ୍ଠାନ ବିଫଳ । ମିଶ୍ରେ ଭାବୁଥିଲେ କି ସୁନ୍ଦର ଜୀବନ ସେମାନଙ୍କର ! ବରଂ କାଉପର୍ ଯଦି ଲେଖିଥାନ୍ତେ- ବରଂ ନିବାସ ଭଲ ପ୍ରକୃତି କୋଳେ, ଯହିଁ ଦିବସ ନିଶି ଶ୍ୱାପଦ ମେଳେ, ଶୁଣନ୍ତି କେକୀ ସ୍ୱନ ଦେଇ ମୁଁ ଲୟ, ଶୀତଳ କରନ୍ତି ମୋ କ୍ଲିଷ୍ଟ ହୃଦୟ । ❋

ꕤ ବାଛରା ପାଟଣା, ଜଟଣୀ, ଖୋର୍ଦ୍ଧା

କବି ଗୌରୀ ଶଙ୍କର କର ଙ୍କ କବିତାଗ୍ରନ୍ଥ
ଅସହାୟତାର ଅନେକାନେକ ଅନୁଭବରେ ଗୁଞ୍ଜରିତ

**ଯକ୍ଷ ଯନ୍ତ୍ରଣା**

ପ୍ରକାଶକ : ମନୀଷା କର
ନୂଆ ବସଷ୍ଟାଣ୍ଡ, ଜଟଣୀ

---

କାବ୍ୟଲୋକ ପ୍ରକାଶନୀର ପ୍ରଥମ ବହି
ନୂଆ କବିତାର ଅଭୁଲା ଅକ୍ଷର

**ପ୍ରଥମ ପୁରୁଷ**

କବି : ରଜନୀ ରଣସିଂହ
ପ୍ରାପ୍ତିସ୍ଥାନ : କାବ୍ୟଲୋକ, ନିଜିଗଡ଼ କୁରୁଖୀ, ହରିରାଜପୁର, ଜଟଣୀ

---

*ସମସାମୟିକ ଓଡ଼ିଆ ଗପରେ ଅନ୍ୟତମ ତରୁଣ ପ୍ରତିଶ୍ରୁତି*
ଡକ୍ଟର ଶଶୀ ରଥ ଙ୍କ ଗପବହି

**ପିଙ୍ଗଳାର ପୃଥିବୀ**

(ନିଜସ୍ୱ ପ୍ରକାଶନ, ପୁରୀ ଦ୍ୱାରା ପ୍ରକାଶିତ)

---

ଭିକାରୀ ଧଳଙ୍କ ଚତୁର୍ଥ କବିତା ସଂକଳନ

**ପକ୍ଷୀର ସକାଳ ଗୀତ**

ପ୍ରକାଶକ : କାବ୍ୟଲୋକ
ନିଜିଗଡ଼ କୁରୁଖୀ, ହରିରାଜପୁର, ଜଟଣୀ, ପୁରୀ

ଆମ ସଂସଦର ସମସ୍ତେ :
ସୃଜନ ଆମର ଶକ୍ତି

କବି ମନ ମୋହନ ଦାଶଙ୍କ 'ଶବର ନକ୍ଷତ୍ର' ଉନ୍ମୋଚନ : ସଭାପତି ପ୍ରାଧ୍ୟାପକ ଶ୍ରୀ ଜଗଦେବ, ଉନ୍ମୋଚକ ପ୍ରଫେସର ବିଭୁଦତ୍ତ ମିଶ୍ର ଓ ଅତିଥି କବି ଡ. ବଂଶୀଧର ଷଡ଼ଙ୍ଗୀ ।

ସଂସଦର ଏକ ବିଶେଷ ଅଧିବେଶନରେ କବି ପ୍ରମୋଦ କୁମାର ମହାନ୍ତି ଓ ଗାୟିକା ଶ୍ରୀମତୀ ମାନସୀ ଦାସଙ୍କ ଗହଣରେ ଅନ୍ୟମାନେ ।

ଚିହ୍ନ : ୧୯୯୯    ମୂଲ୍ୟ : ଟ.୧୦/-    ସଂପାଦକ : ଗୌରୀ ଶଙ୍କର କର



Printed and Published by B[illegible] Secretary on beh[illegible] of Jatni Sahitya Sansad, Jatni, Khurda and printed Su[illegible] Press, Bhubaneswar-6. Editor: **Gouri Shankar Kar.**